# ପ୍ରହ୍ଲାଦ



ରାୟସାହେବ
ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏମ୍. ଏ., ବି. ଇଡ଼.ଙ୍କ
କର୍ତ୍ତୃକ ଲିଖିତ ଓ
ପ୍ରକାଶିତ

ତୃତୀୟ ମୁଦ୍ରଣ

# PRALHAD

BY

Krishnachandra Sen Gupta, M A. B. Ed

Printed by
SRI LAKSHMIDHAR GARABARU
SRI RADHARAMAN PRESS
CUTTACK
1946

ମୂଲ୍ୟ ଟ ୦ ୷ ମାତ୍ର

# ସୂଚୀପତ୍ର

# ପ୍ରହ୍ଲାଦ

## ପ୍ରଥମ ଅଧ୍ୟାୟ



### ପ୍ରହ୍ଲାଦଙ୍କର ପରିଚୟ

ଆଜି ପ୍ରହ୍ଲାଦଙ୍କର ନାମ ଘରେ ଘରେ ଶୁଣାଯାଏ । ସେ କେବେ ଜନ୍ମଗ୍ରହଣ କରିଥିଲେ, କେବେ ଇହଧାମ ପରିତ୍ୟାଗ କରିଥିଲେ, ଏ ସମସ୍ତ କଥା ପଚାରୁଛି କିଏ ? ପ୍ରହ୍ଲାଦଙ୍କର ତ୍ୟାଗପୂର୍ଣ୍ଣ ଜୀବନ ଭାରତର ଅମୂଲ୍ୟ ସମ୍ପଦ ଏବଂ ଆଦର୍ଶ । ସେଥିପାଇଁ ଜନ୍ମ ବା ମୃତ୍ୟୁର ତାରିଖ ସେନି ଭାରତ କେବେହେଁ ବ୍ୟସ୍ତ ନୁହେ । ଭାରତ ଚିରକାଳ ଧର୍ମପ୍ରାଣ ଏବଂ ସାରଗ୍ରହଣରେ ଅଭ୍ୟସ୍ତ । ପ୍ରହ୍ଲାଦ ଧର୍ମ ସକାଶେ ଜୀବନକୁ ତୁଚ୍ଛ କରି ଆପଣାର ମହତ୍ତ୍ୱ ଦେଖାଇ ଯାଇଅଛନ୍ତି । ଭାରତ ପକ୍ଷରେ ଏତିକି ଯଥେଷ୍ଟ । ଭାରତ ଦିନେ ପ୍ରହ୍ଲାଦଙ୍କ ନାମ ଭୁଲିଗଲେ ଭୁଲି ଯାଇ ପାରେ । କିନ୍ତୁ ପ୍ରହ୍ଲାଦ ଯେଉଁ ଅମାନୁଷିକ ତ୍ୟାଗର ଜ୍ୱଳନ୍ତ ଆଦର୍ଶ ରଖି ଯାଇଅଛନ୍ତି, ତାହା ଭାରତ କେବେହେଁ ବିସ୍ମୃତ ହେବ ନାହିଁ ।

ଯାହାହେଉ, ଦୁଇ ଏକ କଥାରେ ପ୍ରହ୍ଲାଦଙ୍କର ପରିଚୟ ଦେବାକୁ ହେବ । ପୂର୍ବକାଳରେ ଦିତିର ପୁତ୍ର ହିରଣ୍ୟକଶିପୁ ବ୍ରହ୍ମାଙ୍କ ପ୍ରଦତ୍ତ ବରବଳରେ ଗର୍ବିତ ହୋଇ ତ୍ରିଲୋକ ବଶୀଭୂତ କଲେ ।

ସେହି ଦୈତ୍ୟରାଜ ଦେବରାଜ ଇନ୍ଦ୍ରଙ୍କୁ ପଦଚ୍ୟୁତ କରି ନିଜେ ଇନ୍ଦ୍ରତ୍ୱ କରିବାକୁ ଲାଗିଲେ ଏବଂ ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅଗ୍ନି, ବରୁଣ ଏମାନଙ୍କର ଅଧିକାର ଗ୍ରହଣ କଲେ । ସେ ଧନାଧିପତି କୁବେର ଓ ଯମକୁ ତଡ଼ିଦେଇ ଆପେ ସେମାନଙ୍କ ପଦରେ ନିଯୁକ୍ତ ହେଲେ ଏବଂ ଆପେ ସମୁଦାୟ ଯଜ୍ଞ-ଭାଗ ଗ୍ରହଣ କରିବାକୁ ଲାଗିଲେ । ଦେବତାମାନେ ତାହାଙ୍କ ଭୟରେ ଭୀତ ହୋଇ ସୁରଲୋକ ପରିତ୍ୟାଗ କରି ମନୁଷ୍ୟରୂପରେ ଭୂତଳରେ ବିଚରଣ କରିବାକୁ ଲାଗିଲେ । ସେ ସମଗ୍ର ତ୍ରିଭୁବନ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ତ୍ରୈଲୋକ୍ୟର ଏକାଧିପତ୍ୟ ପାଇ ଏବଂ ଗର୍ବପୂର୍ଣ୍ଣମନରେ ଗନ୍ଧର୍ବମାନଙ୍କଦ୍ୱାରା ପୂଜିତ ହୋଇ ସେ ରମଣୀୟ ବିଷୟ ଭୋଗ କରିବାକୁ ଲାଗିଲେ । କେହି ତାହାଙ୍କୁ ମନୋହର ମାଳଦ୍ୱାରା ବିଭୂଷିତ କରୁଅଛି, କେହି ତାହାଙ୍କର ଶ୍ରୀଅଙ୍ଗରେ ଚନ୍ଦନ ଲେପନ କରୁଅଛି ଏବଂ କେତେବେଳେ ଅବା ଅପ୍ସରାମାନେ ତାହାଙ୍କ ସମ୍ମୁଖରେ ମଧୁର ନୃତ୍ୟ କରି ତାହାଙ୍କର ମନୋହରଣ କରୁଅଛନ୍ତି । ଅସାଧାରଣ ପ୍ରଭାବଶାଳୀ ହିରଣ୍ୟକଶିପୁ ପାନାସକ୍ତ ହେବାବେଳେ ସିଦ୍ଧ, ଗନ୍ଧର୍ବ ଓ ପନ୍ନଗମାନେ ତାହାଙ୍କର ଉପାସନା କରିଥାନ୍ତି । ସେତେବେଳେ ସିଦ୍ଧମାନଙ୍କ ମଧ୍ୟରୁ କେହି ତାହାଙ୍କ ନିକଟରେ ଶ୍ରୁତିମଧୁର ସଙ୍ଗୀତ ଗାନ କରୁଥାନ୍ତି, କେହି ସୁନ୍ଦର ବାଦ୍ୟ ବଜାଉଥାନ୍ତି ଏବଂ କେହି କେହି ତାହାଙ୍କର ଜୟଜୟକାର କରି ଦୈତ୍ୟପୁରୀ ମୁଖରିତ କରୁଥାନ୍ତି । ଯେତେବେଳେ ସେହି ଦୈତ୍ୟରାଜ ଅଭ୍ରମୟ ଓ ସ୍ଫଟିକମୟ ପ୍ରାସାଦରେ ଅବସ୍ଥିତକରି ସୁରାପାନରେ ଟଳଟଳ, ତେତେବେଳେ ଅପ୍‌ସରାମାନେ ତାହାଙ୍କ ନିକଟରେ ନୃତ୍ୟ ଗୀତାଦରେ ପ୍ରବୃତ୍ତ ହେଉଥାନ୍ତି । ଏକ କଥାରେ କହିବାକୁ ଗଲେ ମନୁଷ୍ୟ ଯାହା କଳ୍ପନା ସୁଦ୍ଧା କରି ପାରେ ନାହିଁ, ହିରଣ୍ୟକଶିପୁ ସେ ସମସ୍ତ ଭୋଗ କରି ସମଗ୍ର ପୃଥିବୀର ଏକଚ୍ଛତ୍ର ରାଜଚକ୍ରବର୍ତ୍ତିରୂପେ ବିଦ୍ୟମାନ ହେଲେ ।

ହିରଣ୍ୟକଶିପୁ ବ୍ରହ୍ମାଙ୍କଠାରୁ ବର ପାଇ ଧରାକୁ ସରା ପରି ମନେ କରି ଅତ୍ୟନ୍ତ ଅତ୍ୟାଚାରୀ ହୋଇ ପଡ଼ିଲେ । ସେ ଦେବତା, ବ୍ରାହ୍ମଣ ଓ ଭଗବାନଙ୍କୁ ମଧ୍ୟ ବିଦ୍ୱେଷ କଲେ । ସେ ସମସ୍ତଙ୍କୁ ଜୟ କରିଥିଲେ ସତ୍ୟ, ମାତ୍ର ନିଜକୁ ଅର୍ଥାତ୍ ନିଜର ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିଲେ । ତାହାଙ୍କର ଅତ୍ୟାଚାର ବହୁକାଳ ପର୍ଯ୍ୟନ୍ତ ସହ୍ୟ କରି ଅବଶେଷରେ ଦେବତାମାନେ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୋଇ ନିଜ ନିଜର ଦୁଃଖ ନିବେଦନ କଲେ । ତାହାଙ୍କୁ ସମସ୍ତ କଥା ଆଗରୁ ଜଣା । ସେ ଦୈତ୍ୟରାଜଙ୍କର ଅତ୍ୟାଚାରରେ ପୀଡ଼ିତ ଦେବତାମାନଙ୍କୁ ଆଶ୍ୱାସ ଦେଇ କହିଲେ, "ଯଦିବା ହିରଣ୍ୟକଶିପୁ ବ୍ରହ୍ମାଙ୍କର ବର ପାଇ ଏପରି ତେଜସ୍ୱୀ ହୋଇଅଛି, ତଥାପି ଦୁରାତ୍ମା ଯେତେବେଳେ ନିଜର ପୁତ୍ର ପରମଭକ୍ତ ମହାତ୍ମା ପ୍ରହ୍ଲାଦଙ୍କ ପ୍ରତି ନିଷ୍ଠୁର ଆଚରଣ କରିବ, ସେତେବେଳେ ମୁଁ ନିଶ୍ଚୟ ତାହାକୁ ବିନାଶ କରିବ ।" ଆମ୍ଭମାନଙ୍କର ପ୍ରହ୍ଲାଦ ଏହି ଦୈତ୍ୟରାଜ ହିରଣ୍ୟକଶିପୁର ପୁତ୍ର ।



# ଦ୍ୱିତୀୟ ଅଧ୍ୟାୟ

## ପିତାଙ୍କର ପାଠ ପରୀକ୍ଷା, କ୍ରୋଧ ଏବଂ ପୁତ୍ର ବିନାଶ ଚେଷ୍ଟା

ପ୍ରହ୍ଲାଦ କ୍ରମଶଃ ହୋଇ ବଢ଼ିବାକୁ ଲାଗିଲେ । ଯେତେବେଳେ ତାହାଙ୍କର ବୟସ ପ୍ରାୟ ୪।୫ ବର୍ଷ, ହିରଣ୍ୟକଶିପୁ ପୁତ୍ରର ଅଧ୍ୟାପନାର୍ଥ ଗୁରୁ ନିଯୁକ୍ତ କଲେ ଏବଂ ପ୍ରହ୍ଲାଦ ଗୁରୁଗୃହରେ ରହି ପାଠାଭ୍ୟାସ କରିବ, ପିତା ମାତା ଉଭୟେ ଏ କଥା ସ୍ଥିର କଲେ । ପ୍ରହ୍ଲାଦ ଶୈଶବକାଳରେ ଗୁରୁଗୃହରେ ଅବସ୍ଥାନ କରି ବାଳକମାନଙ୍କର ପାଠ୍ୟପୁସ୍ତକ ଅଧ୍ୟୟନ କରୁଥିଲେ । ଏକଦା ଦୈତ୍ୟରାଜ ସୁରାପାନରେ ଅସକ୍ତ; ଏମନ୍ତ ସମୟରେ ପ୍ରହ୍ଲାଦ ଗୁରୁଙ୍କ ସହିତ ପିତାଙ୍କ ନିକଟରେ ଉପସ୍ଥିତ । ସେ ପିତାଙ୍କୁ ଦର୍ଶନ କରିବା ମାତ୍ରକେ ସାଷ୍ଟାଙ୍ଗ ପ୍ରଣିପାତ କଲେ, ପିତା ତାହାଙ୍କୁ ଭୂମିରୁ ଉଠାଇ ନେଇ କହିଲେ, "ବତ୍ସ ! ଗୁରୁଗୃହରେ ଏତେ ପରିଶ୍ରମ କରି ଯାହା ଶିକ୍ଷା କରିଅଛ, ତାହାର ସାରକଥା କହ ।" ପ୍ରହ୍ଲାଦ କହିଲେ, "ପିତଃ, ମୁଁ ଅଧ୍ୟୟନ କରି ଯେଉଁ ସାର ଲାଭ କରିଅଛି ତାହା ମୋର ହୃଦୟ ମଧ୍ୟରେ ବର୍ତ୍ତମାନ । ଆପଣଙ୍କ ଆଜ୍ଞାନୁସାରେ ମୁଁ ସେହି ସାର କଥା କହିବି, ଶୁଣିବା ହେଉନ୍ତୁ ।" ଏହା କହି ପ୍ରହ୍ଲାଦ ଗମ୍ଭୀର ଭାବ ଧାରଣ କରି ଧୀରଭାବରେ କହିଲେ, "ଯାହାଙ୍କର ଆଦି, ମଧ୍ୟ ବା ଅନ୍ତ ନିର୍ଣ୍ଣୟ କରିବା ଅସମ୍ଭବ, ଯାହାଙ୍କର ଜନ୍ମ ନାହିଁ, ବୃଦ୍ଧି ନାହିଁ, କ୍ଷୟ ନାହିଁ ଏବଂ ବିନାଶ ନାହିଁ, ଯେ ସମସ୍ତ କାରଣର କାରଣ, ମୁଁ ସେହି ମହାତ୍ମାଙ୍କୁ ନମସ୍କାର କରୁଅଛି ।"

ବାଳକ ମୁହଁରୁ ଧର୍ମକଥା ଶୁଣିଲେ ବିଷୟାସକ୍ତ ପିତାମାତାଙ୍କର ମନ ଯେପରି ହୁଏ ହିରଣ୍ୟକଶିପୁଙ୍କର ତାହାଇ ହେଲା । ସେ ପୁତ୍ର

ମୁଖରୁ ଭଗବତ୍ ସ୍ତୁତି ଶ୍ରବଣ କରି କ୍ରୋଧରେ ଅଧୀର ହେଲେ । ତାହାଙ୍କର ଓଷ୍ଠ କମ୍ପିତ ହେବାକୁ ଲାଗିଲା । ଚକ୍ଷୁ ଦୁଇଟି ରକ୍ତବର୍ଣ୍ଣ ହୋଇ ଉଠିଲା । ସେ ଭାବିଲେ ଏହି ଦୋଷ ଏ ପଯ୍ୟୋଗଣ୍ଡ ବାଳକର ନୁହେଁ; ଯାହାଙ୍କ ନିକଟରେ ଏ ବାଳକ ଅଧ୍ୟୟନ କରୁଥିଲା, ସେ ଏଥି ନିମନ୍ତେ ସମ୍ପୂର୍ଣ୍ଣ ଦୋଷୀ । ପ୍ରହ୍ଲାଦଙ୍କର ଶିକ୍ଷାଗୁରୁ ସେଠାରେ ଉପସ୍ଥିତ ଥାଆନ୍ତି; ସୁତରାଂ ତାହାଙ୍କ ଉପରେ କଟାକ୍ଷ ପଡ଼ିଗଲା । ହିରଣ୍ୟକଶିପୁ କ୍ରୋଧରେ ଜର୍ଜ୍ଜର ହୋଇ ଗୁରୁମହାଶୟଙ୍କୁ ସମ୍ବୋଧନପୂର୍ବକ ତର୍ଜ୍ଜନ ଗର୍ଜ୍ଜନ କରି କହିବାକୁ ଲାଗିଲେ, "ରେ ବ୍ରାହ୍ମଣାଧମ ! ରେ ଦୁର୍ମତେ ! ଏ ତୋର କିଭଳି ସାହସ ? ତୁ ମୋତେ ଅବଜ୍ଞା କରି ମୋର ଶିଶୁସନ୍ତାନକୁ ବିପକ୍ଷର ସ୍ତବରୂପ ଅସାରଶିକ୍ଷା ପ୍ରଦାନ କରିଅଛୁ । ତୋର ଏତେ ବଡ଼ ଅସ୍ପର୍ଦ୍ଧା ।" ଗୁରୁ ମହାଶୟ ଧୀର ସ୍ଥିର ହୋଇ ଉତ୍ତର ଦେଲେ, "ଦୈତ୍ୟରାଜ, ମୋ ଉପରେ କୋପ କରନ୍ତୁ ନାହିଁ । ଆପଣଙ୍କର ପୁତ୍ର ଯେପରି କହୁଅଛି, ତାହାକୁ ମୁଁ ସେହିପରି ଶିକ୍ଷା ଦେଇ ନାହିଁ । ସେ ନିଜ ମନରୁ ବାହାର କରି ଏ ସମସ୍ତ କଥା କହୁଅଛି । ଏଥିରେ ମୋର କି ଦୋଷ ?"

ହିରଣ୍ୟକଶିପୁ କିଛିଏ ସ୍ଥିର ହୋଇ କହିଲେ, "ବତ୍ସ ! ପ୍ରହ୍ଲାଦ, ତୁମ୍ଭର ଗୁରୁ ମହାଶୟ କହୁଅଛନ୍ତି ଯେ ସେ ତୁମ୍ଭଙ୍କୁ ଏପରି ଶିକ୍ଷା ଦେଇ ନାହାନ୍ତି । ତେବେ କିଏ ତୁମ୍ଭଙ୍କୁ ଏପରି ଶିକ୍ଷା ଦେଲା କହ ?" ପ୍ରହ୍ଲାଦ ପିତାଙ୍କର ପ୍ରଶ୍ନ ଶୁଣି ଆଚମ୍ବିତ ହେଲେ । ଶିକ୍ଷା ଯେ ଭଗବାନ ବ୍ୟତୀତ ଅନ୍ୟ କେହି ଦିଅନ୍ତି, ଶୁଦ୍ଧଚିତ୍ତ ପ୍ରହ୍ଲାଦଙ୍କର ଆଦୌ ତାହା ଧାରଣା ନାହିଁ । ତେଣୁ ସେଥିପାଇଁ ସରଳପ୍ରାଣରେ ଉତ୍ତର କଲେ, "ପିତଃ, ଯେ ନିଖିଳ ଜଗତକୁ ଜ୍ଞାନଦାନ କରନ୍ତି, ସେହି ଭଗବାନ ବସ୍ତୁ ହୃଦୟରେ ଅବସ୍ଥାନ କରୁଅଛନ୍ତି । ସେହି ପରମାତ୍ମାଙ୍କ ବ୍ୟତୀତ ଆଉ କିଏ ଜ୍ଞାନଦାନ କରିପାରେ ?" ଏହା ଶୁଣି ହିରଣ୍ୟକଶିପୁଙ୍କର କ୍ରୋଧାଗ୍ନି ପ୍ରଦୀପ୍ତ ହୋଇ

ଉଠିଲେ । ସେ ଅଗ୍ନିଶର୍ମା ହୋଇ କହିଲେ, "ରେ ଦୁର୍ବୁଦ୍ଧେ, ମୁଁ ଜଗତର ଈଶ୍ୱର । ତୁ ମୋ ସମ୍ମୁଖରେ ପୁନଃ ପୁନଃ ନିଃଶଙ୍କଚିତ୍ତରେ ଯାହାର ନାମ ଗାନ କରୁଅଛୁ, ସେ ବିଷ୍ଣୁ କିଏ ?"

ପିତାଙ୍କର ଏହିଭଳି ପ୍ରଶ୍ନଗୁଡ଼ିକ ଯେ ପ୍ରହ୍ଲାଦଙ୍କର ହୃଦୟ-ସମୁଦ୍ରର ମନ୍ଥନଦଣ୍ଡସ୍ୱରୂପ କାର୍ଯ୍ୟ କରୁଥିଲା, ତାହା କହିବା ବାହୁଲ୍ୟ ମାତ୍ର । ସେହି ସମୁଦ୍ର ମନ୍ଥନରୁ ପ୍ରହ୍ଲାଦଙ୍କର ଉତ୍ତରସ୍ୱରୂପ ଯେଉଁ ଅମୃତ ନିର୍ଗତ ହେଉଥିଲା, ତାହା ପାନକରି ଜୀବ ଅମର ହୁଏ ସିନା । "ବିଷ୍ଣୁ କିଏ ?" ପିତାଙ୍କର ଏହି ପ୍ରଶ୍ନ ବାରମ୍ବାର ଶୁଣି ବାଳକ ପ୍ରହ୍ଲାଦ କହିଲେ—

"ନ କେବଲଂ ତାତ ମମ ପ୍ରଜାନାଂ
ସ ବ୍ରହ୍ମଭୂତୋ ଭବତଶ୍ଚ ବିଷ୍ଣୁଃ
ଧାତା ବିଧାତା ପରମେଶ୍ୱରଶ୍ଚ
ପ୍ରସୀଦ, କୋପଂ କୁରୁଷେ କିମର୍ଥମ୍ ?"

ଅର୍ଥାତ୍, "ପିତଃ, ସେହି ବ୍ରହ୍ମସ୍ୱରୂପ ବିଷ୍ଣୁ ଯେ କେବଳ ମୋର ପରମେଶ୍ୱର ତାହା ନୁହେଁ, ସେ ସମୁଦାୟ ଜୀବଜଗତର; ଏପରି କି ଆପଣଙ୍କର ମଧ୍ୟ ଧାତା, ବିଧାତା, ପରମେଶ୍ୱର । ଅତଏବ ପିତଃ, କି ନିମିତ୍ତ ଅନ୍ୟାୟ କୋପ କରୁଅଛନ୍ତି ? ପ୍ରସନ୍ନ ହେଉନ୍ତୁ ।"

ହିରଣ୍ୟକଶିପୁ ଛୋଟ ମୁହଁରୁ ବଡ଼ କଥା ଶୁଣି ରାଗରେ ଅଧୀର ହୋଇ କହିଲେ, ବୋଧ ହୁଏ କୌଣସି ପାପ-ପୁରୁଷ ଏହା ମଧ୍ୟରେ ପ୍ରବେଶ କରିଅଛି । କାରଣ ଏହି ଦୁଷ୍ଟାତ୍ମା ତାହା ନ ହେଲେ ଏପରି ଅସାଧୁ ବାକ୍ୟ ପ୍ରୟୋଗ କରନ୍ତା କାହିଁକି ? ବର୍ତ୍ତମାନ ଦୈତ୍ୟରାଜଙ୍କର ଚକ୍ଷୁରେ ବିଷ୍ଣୁ ଏବଂ ବୈଷ୍ଣବ କଥା ସମସ୍ତ ହେୟ । ସେ ମନେ କରିଅଛନ୍ତି ଯେ ବିଷ୍ଣୁ କେବଳ ପ୍ରହ୍ଲାଦର ଏବଂ ପ୍ରହ୍ଲାଦ ପରି କେତେକ ଦୁର୍ବୁଦ୍ଧି

ମାନବର ପୂଜ୍ୟ । କିନ୍ତୁ କୁଳପାବନ ପୁତ୍ର ପ୍ରହ୍ଲାଦ ଅତି ସୁନ୍ଦର କଥାରେ ତାହାଙ୍କର ଚୈତନ୍ୟ ସମ୍ପାଦନ ନିମିତ୍ତ ଚେଷ୍ଟା କରି କହୁଅଛନ୍ତି—

"ନ କେବଳଂ ମଦ୍‌ହୃଦୟଂ ସ ବିଷ୍ଣୁଃ-

ଅନନ୍ୟ ଲୋକାନ୍ ସକଳାନ୍ ଅବସ୍ଥିତଃ ।

ସ ମାଂ ତ୍ୱଦାଦୀଂଶ୍ଚ ପିତଃ । ସମସ୍ତାନ୍

ସମସ୍ତ ଚେଷ୍ଟାସୁ ଯୁନକ୍ତି ସର୍ବଗଃ ।"

ଅର୍ଥାତ୍ "ପିତଃ, ସେହି ବିଷ୍ଣୁ ଯେ କେବଳ ମୋର ହୃଦୟରେ ବିରାଜ କରୁଅଛନ୍ତି, ତାହା ନୁହେଁ; କାରଣ ସେ ସମସ୍ତ ଲୋକଙ୍କଠାରେ ଅଧିଷ୍ଠାନ କରିଥାନ୍ତି । ସେ ସବୁଠାରୁ ଯାନ୍ତି । ସେ ଆପଣଙ୍କୁ, ମୋତେ, ସମସ୍ତଙ୍କୁ କାର୍ଯ୍ୟବିଶେଷରେ ନିଯୁକ୍ତ କରିଅଛନ୍ତି ।" ପ୍ରହ୍ଲାଦଙ୍କ ମତରେ ଏ ଜଗତରେ ସମସ୍ତେ ବିଷ୍ଣୁଙ୍କଦ୍ୱାରା ନିୟନ୍ତ୍ରିତ । ଯେ ଏ କଥା ବୁଝିପାରେ ସେ ଆପଣାକୁ ବୈଷ୍ଣବ ବା ଭକ୍ତବୋଲି ଧନ୍ୟ ମନେ କରେ; ଯେ ତାହା ନ ବୁଝିପାରେ ସେ ଅନ୍ଧକାର ଗୃହରେ ଅଣ୍ଡାଳି ହେଉଥାଏ; କିନ୍ତୁ ଦିନେ ନା ଦିନେ ଯେ ସମସ୍ତେ ଏହି ତତ୍ତ୍ୱର ସନ୍ଧାନ ପାଇ ପାରିବେ ଏ ବିଷୟରେ ସନ୍ଦେହ କଅଣ ? ଯେତେବେଳେ ପ୍ରହ୍ଲାଦ କହି ବସିଲେଣି, "କେବଳ ମୁଁ ବୈଷ୍ଣବ ବା ବିଷ୍ଣୁ-ନିୟନ୍ତ୍ରିତ ନୁହେଁ; ଆପଣ ମଧ୍ୟ ସେହିପରି," ସେତେବେଳେ ହିରଣ୍ୟକଶିପୁ ନିରୁତ୍ତର । ଶତ୍ରୁପକ୍ଷ ଯୁକ୍ତିରେ ପରାସ୍ତ ହେଲେ ଯେପରି କ୍ରୋଧର ଆଶ୍ରୟ ନିଏ, ପ୍ରହ୍ଲାଦଙ୍କର ପିତା ମଧ୍ୟ ଅନନ୍ୟୋପାୟ ହୋଇ ବିଷମ କ୍ରୋଧର ବଶୀଭୂତ ହେଲେ ଏବଂ ପ୍ରହରୀ-ମାନଙ୍କୁ ସମ୍ବୋଧନ କରି କହିଲେ, "ଏହି ଦୁଷ୍ଟ ଦୁରାତ୍ମାକୁ ମୋ ଆଗରୁ ନେଇଯାଅ । ଏହାକୁ ପୁଣି ଗୁରୁ ଗୃହରେ ରଖି ଉତ୍ତମରୂପେ ଶାସନ କର । ବୋଧହୁଏ କୌଣସି ଦୁଷ୍କର୍ମତି ଏହାକୁ କୁବୁଦ୍ଧି ଦେଇଅଛି ଏବଂ ତାହାର ଫଳରେ ଏ ନିର୍ବୋଧ ବାଳକ ମୋର ଶତ୍ରୁପକ୍ଷର ସ୍ତୁତିପାଠ ଏବଂ କୁପଥର ପ୍ରଶଂସା କରୁଅଛି ।" ଦୈତ୍ୟରାଜ ଏହି କଥା କହିବା ମାତ୍ରକେ

ଦୈତ୍ୟମାନେ ପ୍ରହ୍ଲାଦଙ୍କୁ ଗୁରୁଗୃହରେ ଛାଡ଼ି ଆସିଲେ । ପ୍ରହ୍ଲାଦ ଗୁରୁ ଶୁଶ୍ରୂଷାରେ ନିଯୁକ୍ତ ଥାଇ ନିରନ୍ତର ବିଦ୍ୟାଶିକ୍ଷା କରିବାକୁ ଲାଗିଲେ । ଏଣେ ଗୁରୁମହାଶୟ ଦୈତ୍ୟରାଜଙ୍କ ସନ୍ତୋଷବିଧାନାର୍ଥ ପ୍ରହ୍ଲାଦ ଯେପରି କୃଷ୍ଣ ଶତ୍ରୁଙ୍କର ନାମ ଭୁଲିଯାନ୍ତି, ସେଥିପାଇଁ ଯଥାସାଧ୍ୟ ଚେଷ୍ଟା କରିବାକୁ ଲାଗିଲେ । କିନ୍ତୁ ହାୟ ! ପିତା ମାତା ଗୁରୁଜନ ପିଲା ମାନଙ୍କୁ ଅଦଳ ବଦଳ କରି ପାରନ୍ତି; ଭିତରଟାକୁ ବଦଳାଇବାର ସାଧ ବା ଅଧିକାର କାହାର ? ଅନ୍ତରର କଥା ଯେ ଜାଣେ, ସେହି ପିଲା ଅନ୍ତରଟାକୁ ବଦଳାଇ ପାରେ । ଅନ୍ତର୍ଯ୍ୟାମୀ ହରିଙ୍କ କୃପା ନ ହେଲେ ଏ ଦୁଗ୍ଧପୋଷ୍ୟ ବାଳକ କିପରି ତାଙ୍କର ଗୁଣଗାନରେ ପ୍ରବୃତ୍ତ ହୁଅନ୍ତା ? ଶିକ୍ଷାଗୁରୁ ପ୍ରହ୍ଲାଦଙ୍କର ମନ ପରିବର୍ତ୍ତନ କରିବାପାଇଁ କେତେ ଚେଷ୍ଟା କରିବାକୁ ଲାଗିଲେ । କିନ୍ତୁ ପ୍ରହ୍ଲାଦ ବର୍ଣ୍ଣମାଳା ପଢ଼ୁ ପଢ଼ୁ ଯେତେବେଳେ ଔ ଔ ସାରି 'କ' ପାଖରେ ପହଞ୍ଚନ୍ତି; ସେତେବେଳେ ତାହାଙ୍କର ଗଣ୍ଡଦ୍ୱୟ ଅଶ୍ରୁସିକ୍ତ ହୋଇଯାଏ; 'କ' ରୁ 'ଖ' ପର୍ଯ୍ୟନ୍ତ ଯିବା ଦୁଷ୍କର ହୋଇ ପଡ଼େ । ବାଳକ 'କ' ଉଚ୍ଚାରଣ କରିବାବେଳେ ବା 'କ' ଅକ୍ଷର ଦେଖିବା ବେଳେ 'କୃଷ୍ଣ' ମନେ ପଡ଼ିଯାନ୍ତି ଏବଂ ସେ ତେତେବେଳେ ଅତି ବେଦନ କରେ । ଏ ପ୍ରେମର ବୀଜ ପ୍ରହ୍ଲାଦଙ୍କ ହୃଦୟରେ ରୋପଣ କଲା କିଏ ?



# ତୃତୀୟ ଅଧ୍ୟାୟ

## ଲାଞ୍ଛନାଉଦ୍ରେଗ

ଏହିରୂପେ ପ୍ରହ୍ଲାଦ ଗୁରୁଗୃହରେ ବାସ କରିବାକୁ ଲାଗିଲେ । ଦୈତ୍ୟରାଜ ଭାବୁଥାନ୍ତି, ପ୍ରହ୍ଲାଦ ଏହିପରି କଠୋର ଶାସନରେ ରହି ବିଷ୍ଣୁ ଭକ୍ତି ଓ ବିଷ୍ଣୁ ନାମ ପାଶୋରି ଦିବ । କିଛିକାଳ ଅତୀତ ହେବା ପରେ ଦିନେ ଦୈତ୍ୟରାଜ ପ୍ରହ୍ଲାଦଙ୍କୁ ଗୁରୁଗୃହରୁ ଡକାଇ ପଠାଇଲେ । ପ୍ରହ୍ଲାଦ ପିତାଙ୍କ ନିକଟରେ ଉପସ୍ଥିତ । ପିତା ପୁତ୍ରର ବିଦ୍ୟା ପରୀକ୍ଷା କରିବାପାଇଁ ପୁତ୍ରକୁ କହିଲେ, "ଗୋଟିଏ କବିତା ମନରୁ କହ ।" ପ୍ରହ୍ଲାଦ ତତ୍‌କ୍ଷଣାତ୍ କହିଲେ—

"ଯତଃ ପ୍ରଧାନପୁରୁଷୌ ଯତଶ୍ଚୈତତ୍ ଚରାଚରମ୍
କାରଣଂ ସକଳସ୍ୟାସ୍ୟ ସ ନୋ ବିଷ୍ଣୁଃ ପ୍ରସୀଦତୁ ।"

ଅର୍ଥାତ୍ "ଯାହାଙ୍କଠାରୁ ପ୍ରକୃତିପୁରୁଷ ଓ ଏହି ଚରାଚର ଜଗତ ଅଭିବ୍ୟକ୍ତ ହୋଇଅଛି, ଯେ ଅଖିଳ ପଦାର୍ଥର କାରଣସ୍ୱରୂପ, ସେହି ବିଷ୍ଣୁ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।" ପୁନର୍ବାର ସେହି ବିଷ୍ଣୁ ସ୍ତୁତି ଶ୍ରବଣମାତ୍ରକେ ହିରଣ୍ୟକଶିପୁଙ୍କର ମନ ଅସ୍ଥିର ହେଲା । ସେ ଭୀଷଣଭାବରେ କ୍ରୋଧାନ୍ଧ ହୋଇ କହିଲେ, "ଏହି ଦୁରାତ୍ମାକୁ ବଧ କର । ଏହାର ଜୀବନ ବିଫଳ । ଏ ମୋ ବିପକ୍ଷର ଅମଙ୍ଗଳ ବାଞ୍ଛା କରୁଅଛି । ସୁତରାଂ ଏ ଗୋଟାଏ କୁଳାଙ୍ଗାର ।"

ଦୈତ୍ୟରାଜଙ୍କର ଆଦେଶ ପାଇବା ମାତ୍ରକେ ଶତ ଶତ ଦୈତ୍ୟ ପ୍ରହ୍ଲାଦଙ୍କୁ ବିନାଶ କରିବାପାଇଁ ଅସ୍ତ୍ରଶସ୍ତ୍ର ଗ୍ରହଣ କରି ପ୍ରସ୍ତୁତ ହେଲେ ।

ଦୈତ୍ୟମାନେ ପ୍ରହ୍ଲାଦଙ୍କୁ ଗୁରୁଗୃହରେ ଛାଡ଼ି ଆସିଲେ । ପ୍ରହ୍ଲାଦ ଗୁରୁ ଶୁଶ୍ରୂଷାରେ ନିଯୁକ୍ତ ଥାଇ ନିରନ୍ତର ବିଦ୍ୟାଶିକ୍ଷା କରିବାକୁ ଲାଗିଲେ । ଏଣେ ଗୁରୁମହାଶୟ ଦୈତ୍ୟରାଜଙ୍କ ସନ୍ତୋଷବିଧାନାର୍ଥ ପ୍ରହ୍ଲାଦ ଯେପରି କୃଷ୍ଣ କୃଷ୍ଣଙ୍କର ନାମ ଭୁଲିଯାନ୍ତି, ସେଥିପାଇଁ ଯଥାସାଧ୍ୟ ଚେଷ୍ଟା କରିବାକୁ ଲାଗିଲେ । କିନ୍ତୁ ହାୟ ! ପିତା ମାତା ଗୁରୁଜନ ସିନା ବାହାରଟାକୁ ଅଦଳ ବଦଳ କରି ପାରନ୍ତି; ଭିତରଟାକୁ ବଦଳାଇବାର ସାଧ୍ୟ ବା ଅଧିକାର କାହାର ? ଅନ୍ତରର କଥା ଯେ ଜାଣେ, ସେହି ସିନା ଅନ୍ତରଟାକୁ ବଦଳାଇ ପାରେ । ଅନ୍ତର୍ଯ୍ୟାମୀ ହରିଙ୍କ କୃପା ନ ହେଲେ ଏ ଦୁଗ୍ଧପୋଷ୍ୟ ବାଳକ କିପରି ତାଙ୍କର ଗୁଣଗାନରେ ପ୍ରବୃତ୍ତ ହୁଅନ୍ତା ? ଶିକ୍ଷାଗୁରୁ ପ୍ରହ୍ଲାଦଙ୍କର ମନ ପରିବର୍ତ୍ତନ କରିବାପାଇଁ କେତେ ଚେଷ୍ଟା କରିବାକୁ ଲାଗିଲେ । କିନ୍ତୁ ପ୍ରହ୍ଲାଦ ବର୍ଣ୍ଣମାଳା ପଢ଼ୁ ପଢ଼ୁ ଯେତେବେଳେ ଓ ଔ ପରେ 'କ' ପାଖରେ ପହଞ୍ଚନ୍ତି; ସେତେବେଳେ ତାହାଙ୍କର ଗଣ୍ଡଦ୍ୱୟ ଅଶ୍ରୁସିକ୍ତ ହୋଇଯାଏ; 'କ' ରୁ 'ଖ' ପର୍ଯ୍ୟନ୍ତ ଯିବା ଦୁଷ୍କର ହୋଇ ପଡ଼େ । ବାଳକ 'କ' ଉଚ୍ଚାରଣ କରିବାବେଳେ ବା 'କ' ଅକ୍ଷର ଦେଖିବା ବେଳେ 'କୃଷ୍ଣ' ମନେ ପଡ଼ିଯାନ୍ତି ଏବଂ ସେ ସେତେବେଳେ ଜଡ଼ ବୋଧ ନ କରେ । ଏ ପ୍ରେମର ବୀଜ ପ୍ରହ୍ଲାଦଙ୍କ ହୃଦୟରେ ରୋପଣ କଲା କିଏ ?



# ତୃତୀୟ ଅଧ୍ୟାୟ

## ଲାଞ୍ଛନାବେଗ

ଏହିରୂପେ ପ୍ରହ୍ଲାଦ ଗୁରୁଗୃହରେ ବାସ କରିବାକୁ ଲାଗିଲେ । ଦୈତ୍ୟରାଜ ଭାବୁଥା'ନ୍ତି, ପ୍ରହ୍ଲାଦ ଏହିପରି କଠୋର ଶାସନରେ ରହି ବିଷ୍ଣୁ ଭକ୍ତି ଓ ବିଷ୍ଣୁ ନାମ ପାଶୋରି ଦେବ । କିଛିକାଳ ଅତୀତ ହେବା ପରେ ଦିନେ ଦୈତ୍ୟରାଜ ପ୍ରହ୍ଲାଦଙ୍କୁ ଗୁରୁଗୃହରୁ ଡକାଇ ପଠାଇଲେ । ପ୍ରହ୍ଲାଦ ପିତାଙ୍କ ନିକଟରେ ଉପସ୍ଥିତ । ପିତା ପୁତ୍ରର ବିଦ୍ୟା ପରୀକ୍ଷା କରିବାପାଇଁ ପୁତ୍ରକୁ କହିଲେ, "ଗୋଟିଏ କବିତା ମନରୁ କହ ।" ପ୍ରହ୍ଲାଦ ତତ୍‌କ୍ଷଣାତ୍ କହିଲେ—

"ଯତଃ ପ୍ରଧାନପୁରୁଷୌ ଯତଶ୍ଚୈତତ୍ ଚରାଚରମ୍
କାରଣଂ ସକଳସ୍ୟାସ୍ୟ ସ ନୋ ବିଷ୍ଣୁଃ ପ୍ରସୀଦତୁ ।"

ଅର୍ଥାତ୍ "ଯାହାଙ୍କଠାରୁ ପ୍ରକୃତିସ୍ୱରୂପ ଓ ଏହି ଚରାଚର ଜଗତ ଅଭିବ୍ୟକ୍ତ ହୋଇଅଛି, ଯେ ଅଖିଳ ପଦାର୍ଥର କାରଣସ୍ୱରୂପ, ସେହି ବିଷ୍ଣୁ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।" ପୁନର୍ବାର ସେହି ବିଷ୍ଣୁ ସ୍ତୁତି ଶ୍ରବଣମାତ୍ରକେ ହିରଣ୍ୟକଶିପୁଙ୍କର ମନ ଅସ୍ଥିର ହେଲା । ସେ ଭୀଷଣଭାବରେ କ୍ରୋଧାନ୍ଧ ହୋଇ କହିଲେ, "ଏହି ଦୁରାତ୍ମାକୁ ବଧ କର । ଏହାର ଜୀବନ ବିଫଳ । ଏ ସ୍ୱପକ୍ଷର ଅମଙ୍ଗଳ ବାଞ୍ଛା କରୁଅଛି । ସୁତରାଂ ଏ ଗୋଟାଏ କୁଳାଙ୍ଗାର ।"

ଦୈତ୍ୟରାଜଙ୍କର ଆଦେଶ ପାଇବା ମାତ୍ରକେ ଶତ ଶତ ଦୈତ୍ୟ ପ୍ରହ୍ଲାଦଙ୍କୁ ବିନାଶ କରିବାପାଇଁ ଅସ୍ତ୍ରଶସ୍ତ୍ର ଗ୍ରହଣ କରି ପ୍ରସ୍ତୁତ ହେଲେ ।

ବାଳକ ଶାଣିତ ଅସ୍ତ୍ରଶସ୍ତ୍ର ଓ ଖଡ୍ଗଧାରୀ ଦୈତ୍ୟମାନଙ୍କୁ ସମ୍ମୁଖରେ ଦେଖି ସୁଦ୍ଧା ସ୍ଥିର କଲେ ଯେ, ତାଙ୍କ ମଧ୍ୟରେ ଯେଉଁ ବିଷ୍ଣୁ ବିରାଜ କରୁଅଛନ୍ତି, ଏହି ଦୈତ୍ୟଗଣ ଓ ସେମାନଙ୍କର ଅସ୍ତ୍ରଶସ୍ତ୍ରରେ ସେହି ବିଷ୍ଣୁ ବିରାଜ କରୁଅଛନ୍ତି । କାରଣ ସେ ସର୍ବବ୍ୟାପୀ । ସୁତରାଂ ଏହି ଅସ୍ତ୍ରଶସ୍ତ୍ର ବା ଦୈତ୍ୟମାନେ ତାଙ୍କର କୌଣସି ଅନିଷ୍ଟ କରି ପାରିବେ ନାହିଁ । ଦେଖୁ ଦେଖୁ ଶତ ଶତ ଦୈତ୍ୟ ପ୍ରହ୍ଲାଦଙ୍କୁ ଆଘାତ କରିବାକୁ ଲାଗିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେଥିରେ ପ୍ରହ୍ଲାଦଙ୍କର ଶରୀର କ୍ଷତବିକ୍ଷତ ହେବା ଦେଖିବା ଥାଉ, ନୂତନ ବୋଧ ହେବାକୁ ଲାଗିଲା ।

ଦୈତ୍ୟମାନେ ହତବୁଦ୍ଧି ହୋଇ ଦୈତ୍ୟରାଜଙ୍କ ନିକଟରେ ସମସ୍ତ କଥା ଜଣାଇଲେ । ଅସ୍ତ୍ରଶସ୍ତ୍ର ପ୍ରହ୍ଲାଦର ଶରୀରକୁ ଆଘାତ କରି ପାରିଲା ନାହିଁ—ଶୁଣି ଦୈତ୍ୟରାଜ ମଧ୍ୟ ଟିକିଏ ବିଚଳିତ ହେଲେ । ସେ ଭାବିଲେ, ଆଜି ଟିକିଏ ବୁଝାଇ ସୁଝାଇ ପିଲାର ମନ ଯଦି ବିଷ୍ଣୁଙ୍କ ଆଡୁ ଫେରାଇ ନିଆ ଯାଇପାରେ, ତାହାହେଲେ ଅନ୍ୟ ଉପାୟର ପ୍ରୟୋଜନ ହେବ ନାହିଁ । ଅସ୍ତ୍ର ଶସ୍ତ୍ର ପ୍ରୟୋଗ ଯେଉଁଠାରେ ବ୍ୟର୍ଥ ହେଲାଣି, ସେଠାରେ ଯେ ଅନ୍ୟ ଉପାୟ ଫଳବତୀ ହେବ ତାହା କିଏ କହିପାରେ ? ସୁତରାଂ ଦୈତ୍ୟରାଜ ପୁତ୍ରର ସମ୍ମୁଖୀନ ହୋଇ ତାହାକୁ କହିଲେ, "ପ୍ରହ୍ଲାଦ, ମୋର ଶତ୍ରୁପକ୍ଷ ପ୍ରତି ତୋର ଏତେ ପକ୍ଷପାତ ଓ ସମାଦର କାହିଁକି ? ମୁଁ ବର୍ତ୍ତମାନ ତୋତେ ଅଭୟ ଦାନ କରୁଅଛି । ବିଷ୍ଣୁ ପ୍ରଶଂସାରୁ କ୍ଷାନ୍ତ ହୁଅ । ଏପରି ମୂର୍ଖତା କରି କାହିଁକି କଷ୍ଟ ଭୋଗ କରୁଅଛୁ ?" ବିଷ୍ଣୁ ପକ୍ଷ ଅବଲମ୍ବନ କରିଥିବାରୁ ପ୍ରହ୍ଲାଦ ଯେପରି ଦୈତ୍ୟରାଜଙ୍କର ଶତ୍ରୁ, ସେହିପରି ଔରସଜାତ ପୁତ୍ରବୋଲି ମଧ୍ୟ ସ୍ନେହର ପାତ୍ର । ଅନ୍ୟ କେହି ହୋଇଥିଲେ ଦୈତ୍ୟରାଜ ବିଚାର କରିବାର ଅବସର ନ ନେଇ ବଧର ଉପାୟମାନ ପରେ ପରେ ପ୍ରୟୋଗ କରୁଥାନ୍ତେ । ପୁତ୍ରସ୍ନେହ, ଅସ୍ତ୍ର ପ୍ରୟୋଗର ବିଫଳତା ଏବଂ ଉପାୟାନ୍ତର

ପ୍ରୟୋଗରେ ସୁଫଳ ପ୍ରାପ୍ତିର କ୍ଷୀଣ ଆଶା ଦୈତ୍ୟରାଜଙ୍କୁ ଅବସର ଦେଇ କାର୍ଯ୍ୟ କରାଉଥାଏ ।

ଯାହା ହେଉ, ଏଣେ ଅସ୍ତ୍ରଶସ୍ତ୍ରପ୍ରୟୋଗ ବିଫଳ ହେବା ଦେଖି ପ୍ରହ୍ଲାଦଙ୍କ ମନରେ ଯେଉଁ ସାମାନ୍ୟ ଭୟର ସଞ୍ଚାର ହୋଇଥିଲା ତାହା ଦୂରହୋଇଗଲାଣି । ବର୍ତ୍ତମାନ ସେ ସମ୍ପୂର୍ଣ୍ଣରୂପେ ବିଷ୍ଣୁ ମହିମା ବୁଝିପାରି ତାଙ୍କରି ଉପରେ ନିର୍ଭର କଲେଣି । ସୁତରାଂ ପିତାଙ୍କର ଅଭୟବାଣୀ ଶୁଣି ମଧ୍ୟ ଧୀର ଗମ୍ଭୀର ସ୍ୱରରେ ସେ କହିଲେ, "ଯାହାଙ୍କୁ ସ୍ମରଣ କଲେ ଜନ୍ମ,ଜରା,ମୃତ୍ୟୁ ପ୍ରଭୃତି ସମୁଦାୟ ଭୟ ଦୂର ହୁଏ,ସେହି ଭୟହାରୀ ଭଗବାନ୍ ଅନ୍ତଃକରଣରେ ଅବସ୍ଥିତ କଲେ ଭୟର ସମ୍ଭାବନା କଣ ?"

ପୁତ୍ରର ଏହିପରି ନିର୍ଭୀକ ଉତ୍ତର ଶ୍ରବଣ କରି ଦୈତ୍ୟରାଜ ଅନ୍ୟ ଉପାୟ ଖୋଜିବାକୁ ଲାଗିଲେ । ସେ ଭାବିଲେ, ସର୍ପ ଦଂଶନ କଲେ ଏହି ବାଳକ ନିଶ୍ଚୟ ଯମାଳୟରେ ପ୍ରବେଶ କରିବ । ତେଣୁ ସର୍ପମାନଙ୍କୁ ଡାକି କହିଲେ, "ହେ ଭୁଜଙ୍ଗଗଣ, ତୁମ୍ଭେମାନେ ବିଷରୂପ ଅଗ୍ନିଶିଖାଯୁକ୍ତ ମୁଖଦ୍ୱାରା ଏହି ଦୁର୍ମତି ଦୁରାଚାରକୁ ସଦ୍ୟ ବିନାଶ କର ।" ଦୈତ୍ୟରାଜଙ୍କର ଆଦେଶ ପାଇବାକ୍ଷଣି କୁହକ, ତକ୍ଷକ, ଅନ୍ଧକ ପ୍ରଭୃତି ବିଷାକ୍ତ ସର୍ପମାନେ ପ୍ରହ୍ଲାଦଙ୍କୁ ସର୍ବାଙ୍ଗରେ ଦଂଶନ କଲେ । ପ୍ରହ୍ଲାଦ କିନ୍ତୁ ଭଗବାନ୍ କୃଷ୍ଣଙ୍କଠାରେ ମନୋନିବେଶ କରି ପରମ ସନ୍ତୋଷରେ ଦୃଢ଼ ହୋଇ ରହିଲେ । ବିସ୍ମୟର କଥା, ଏଣେ ମହାସର୍ପଗଣ ଯେ ତାହାଙ୍କୁ ଦଂଶନ କରୁଅଛନ୍ତି ସେ ସମସ୍ତ ଆଦୌ ଅନୁଭବ କରି ପାରିଲେ ନାହିଁ । କିନ୍ତୁ ତେଣେ ସର୍ପମାନଙ୍କ ଅବସ୍ଥା ଅତି ଶୋଚନୀୟ । ସେମାନେ ଦୈତ୍ୟରାଜଙ୍କ ନିକଟରେ ଉପସ୍ଥିତ ହୋଇ ଗୁହାରି କଲେ,"ଦୈତ୍ୟେଶ୍ୱର ! ଆମ୍ଭମାନଙ୍କର ଦାନ୍ତଗୁଡ଼ିକ ଭାଙ୍ଗିଗଲା । ମସ୍ତକର ମଣି ଖସିପଡ଼ିଲା । ଗାଲଦାନ୍ତରେ ଜ୍ୱାଳା ପୋଡ଼ା ପାଇଅଛୁ । ହୃତକମ୍ପ ଉପସ୍ଥିତ ହୋଇଅଛି । ତଥାପି ଏହି ବାଳକର

ଦେହରେ ଦାନ୍ତ ଫୁଟାଇ ପାରିଲେ ନାହିଁ ବା ବିଷଜ୍ୱାଳା ଚର୍ମ ଭେଦ କରି ପାରିଲା ନାହିଁ । ବର୍ତ୍ତମାନ ଯଦି ଅନ୍ୟ କୌଣସି କାର୍ଯ୍ୟ ଥାଏ ତାହା ଆଜ୍ଞା କରନ୍ତୁ ।"

ସର୍ପମାନଙ୍କ ଦ୍ୱାରା କାର୍ଯ୍ୟ ସାଧିତ ହୋଇପାରିଲା ନାହିଁ । ସୁତରାଂ ଦୈତ୍ୟେଶ୍ୱର ଉପାୟାନ୍ତର ଚିନ୍ତା କରିବାକୁ ଲାଗିଲେ । ଅସ୍ତ୍ରଶସ୍ତ୍ର ଓ ସର୍ପାଘାତରେ କୌଣସି ଫଳ ହେଲା ନାହିଁ । ଏହାର କାରଣ ଅନୁସନ୍ଧାନ କରୁଛି କିଏ ? ଦୈତ୍ୟରାଜ ଆପଣାର ଅମାନୁଷୀ ଶକ୍ତିର ମୋହରେ ଅନ୍ଧ । ସୁତରାଂ ଉପର୍ଯ୍ୟୁକ୍ତ ଦୁଇଟି ଉପାୟ ବ୍ୟର୍ଥ ହେବାର ଦେଖି ସେ ତୃତୀୟ ଉପାୟ ସ୍ଥିର କଲେ । ସେ ଭାବିଲେ ଯଦି ବଡ଼ ବଡ଼ ଦନ୍ତା ହାତୀମାନେ ପ୍ରହ୍ଲାଦଙ୍କୁ ସେମାନଙ୍କ ଦନ୍ତଦ୍ୱାରା ବିଦ୍ଧ କରନ୍ତି ତେବେ ଏ ବାଳକର ମରଣ ନିଶ୍ଚିତ । ତେଣୁ ଦିଗ୍ଗଜମାନଙ୍କୁ ଡାକି କହିଲେ, "ଦିଗ୍ଗଜଗଣ ! ମୋର ବିପକ୍ଷ ବୈଷ୍ଣବମାନେ ସାମାଦି ଉପାୟ ପ୍ରୟୋଗ କରି ମୋର ପୁତ୍ରକୁ ମୋଠାରୁ ପୃଥକ କରିଅଛନ୍ତି । ଅରଣ୍ୟଜାତ ଅଗ୍ନି ଯେପରି ଅରଣ୍ୟକୁ ଦଗ୍ଧ କରେ, ସେହିପରି ଦୈତ୍ୟକୁଳଜାତ ପ୍ରହ୍ଲାଦ ଦୈତ୍ୟକୁଳର ବିନାଶ ସାଧନରେ ତତ୍ପର । ଅତଏବ ତୁମ୍ଭେ-ମାନେ ସମସ୍ତେ ମିଳିତ ହୋଇ ଉତ୍କଟ ଦନ୍ତଦ୍ୱାରା ବିଦ୍ଧ କରି ଏ ଦୁଷ୍ଟକୁ ବିନାଶ କର ।" କର୍ଣ୍ଣଗୋଚର ହେବା ସଙ୍ଗେ ସଙ୍ଗେ ପର୍ବତଶିଖର ସଦୃଶ ଦିଗ୍ଗଜମାନେ ମିଳିତ ହେଲେ । ସେମାନେ ଦନ୍ତଦ୍ୱାରା ପ୍ରପୀଡ଼ନ-ପୂର୍ବକ ସେହି ବାଳକକୁ ଭୂତଳରେ ନିକ୍ଷେପ କଲେ । ବାଳକ ପ୍ରହ୍ଲାଦ ମଧ୍ୟ ଗୋବିନ୍ଦଙ୍କୁ ସ୍ମରଣ କରିବାକୁ ଲାଗିଲେ । ସୁତରାଂ ସହସ୍ର ସହସ୍ର ଦନ୍ତିଦନ୍ତ ତାହାଙ୍କ ବକ୍ଷରେ ବିଦୀର୍ଣ୍ଣ ହେବା ତେଣିକି ଥାଉ, ହସ୍ତୀମାନେ ବିଦୀର୍ଣ୍ଣ ହୋଇଗଲେ । ହିରଣ୍ୟକଶିପୁ ନିକଟରେ ଦଣ୍ଡାୟମାନ । ଦିଗ୍ଗଜ-ମାନେ [illegible] ହୋଇ ନିରସ୍ତ ହେବା ପରେ ପ୍ରହ୍ଲାଦ ପିତାଙ୍କୁ ସମ୍ମୁଖରେ ଦେଖି ଅତି ବିନୀତ ଭାବରେ ନିବେଦନ କଲେ, "ପିତଃ, ଆପଣ ସ୍ୱୟଂ

ଦେଖିଲେ, ବଜ୍ରସର କଠିନ ଗଜଦନ୍ତମାନ ମୋ ଶରୀରରେ ଭଗ୍ନ ହୋଇଗଲା । ସେ ବିଷୟରେ ମୋର କୌଣସି ଶକ୍ତି ନାହିଁ, କିନ୍ତୁ ଯେ ମହାବିପଦ ଓ ମହାବିପଦର ମୂଳ ମହାପାପରାଶି ଧ୍ୱଂସ କରିଥାନ୍ତି, ସେହି ଗୋବିନ୍ଦଙ୍କୁ ସ୍ମରଣ କରୁଥିଲି ବୋଲି ମୁଁ ଅକ୍ଷତଶରୀରରେ ଆପଣଙ୍କର ଚରଣତଳେ ଦଣ୍ଡାୟମାନ ।”

ପୁତ୍ରର ଏଭଳି ବିନୀତ ନିବେଦନ ଶୁଣୁଛି କିଏ ? ମୋହ ଯେ ଦେଖିବାର ଶକ୍ତି ଥିଲେ ସୁଦ୍ଧା ଦେଖାଇ ଦିଏ ନାହିଁ । ଶୁଣିବାର ଶକ୍ତି ଥାଇ ଶୁଣାଇ ଦିଏ ନାହିଁ, ବିଚାର କରିବାର ମନ ଥାଇ ସୁଦ୍ଧା ବିଚାର କରାଇ ଦିଏ ନାହିଁ । ଦୈତ୍ୟେଶ୍ୱର ଅନ୍ୟ କୌଣସି କଥା ନ ଭାବି ପ୍ରହ୍ଲାଦଙ୍କର ଉଦ୍ଧର୍ମୋକ୍ତ କଥା ଶୁଣି କ୍ରୋଧରେ ଅଧୀର ହୋଇ ପଡ଼ିଲେ । ହତଶକ୍ତି ହସ୍ତୀମାନଙ୍କୁ ଏବଂ ଅନ୍ୟାନ୍ୟଙ୍କୁ ସମ୍ବୋଧନ କରି କହିଲେ, “ଦିଗ୍ଗଜବୃନ୍ଦ ! ତୁମ୍ଭେମାନେ ଏ ସ୍ଥାନରୁ ବାହାରି ଯାଅ । ଅସୁରଗଣ ! ତୁମ୍ଭେମାନେ ଅଗ୍ନି ପ୍ରଜ୍ୱଳିତ କର । ପବନ ! ତୁମ୍ଭେ ଅଗ୍ନିକୁ ପ୍ରଦୀପ୍ତ କରୁଥାଅ । ତୁମ୍ଭେମାନେ ସମସ୍ତେ ମିଳି ଏହି ପାପିଷ୍ଠକୁ ଦଗ୍ଧ କର ।” ଅସ୍ତ୍ରଶସ୍ତ୍ର, ସର୍ପ ଓ ଦନ୍ତୀମାନଙ୍କର ବଳ ପରୀକ୍ଷା କରି ଦୈତ୍ୟରାଜ ବର୍ତ୍ତମାନ ଅଗ୍ନିର ବଳ ପରୀକ୍ଷାରେ ଉଦ୍ୟତ । ଦେଖାଯାଉ, ବିପଦବାରଣ ମଧୁସୂଦନଙ୍କର କି ଇଚ୍ଛା ! ଦୈତ୍ୟରାଜଙ୍କର ଆଦେଶକ୍ରମେ ଦାନବମାନେ ପର୍ବତପ୍ରମାଣ କାଷ୍ଠରାଶି ସଂଗ୍ରହ କରି ତଦ୍ଦ୍ୱାରା ପ୍ରହ୍ଲାଦଙ୍କୁ ଆଚ୍ଛାଦନ କଲେ । ତତ୍ପରେ ତହିଁରେ ଅଗ୍ନି ସଂଯୋଗ କରି ତାହାଙ୍କୁ ଦଗଧ କରିବାକୁ ଆରମ୍ଭ କଲେ । କିନ୍ତୁ ଦୈତ୍ୟରାଜଙ୍କର ପରମ ପରିତାପର ବିଷୟ ଏହି ଯେ, ଅଗ୍ନି ତିଳେମାତ୍ର ପ୍ରହ୍ଲାଦଙ୍କର ଅଙ୍ଗକୁ ସ୍ପର୍ଶ କଲା ନାହିଁ । ପ୍ରହ୍ଲାଦଙ୍କର ଅଙ୍ଗ ଯେ ବର୍ତ୍ତମାନ ଗୋବିନ୍ଦଙ୍କର ଅଙ୍ଗ । ଅଗ୍ନିର କି ସାଧ୍ୟ ଯେ ଶତ୍ରୁଭାବରେ ସେ ଅଙ୍ଗ ସ୍ପର୍ଶ କରିବ ? ଦୈତ୍ୟରାଜ ସେହି ଭୀଷଣ ଅଗ୍ନିଶିଖା ଦେଖି ଭାବୁଥାନ୍ତି, ଏହି ଥର ନିଶ୍ଚୟ ପ୍ରହ୍ଲାଦ ବିନଷ୍ଟ ହେବ ଏବଂ ଏଣେ ପ୍ରହ୍ଲାଦ ଚାହିଁଛି,

ତତ୍ ସଙ୍ଗେ ସଙ୍ଗେ ବିଷ୍ଣୁ ମହିମା ମଧ୍ୟ ବିନଷ୍ଟ ହେବ । ଏ ଲେଲିହମାନ ପ୍ରଦୀପ୍ତ ଅଗ୍ନି ଶିଖାରୁ ପ୍ରାଣପାଇବା ପ୍ରହ୍ଲାଦଙ୍କର, କି ପ୍ରହ୍ଲାଦ ପ୍ରଭୁ ବିଷ୍ଣୁଙ୍କର ମଧ୍ୟ ସାଧ୍ୟ ନୁହେଁ । କିନ୍ତୁ ଦେଖୁ ଦେଖୁ ଅଗ୍ନିଶିଖା ନିର୍ବାଣୋନ୍ମୁଖ ହେଲା । ହିରଣ୍ୟକଶିପୁ ସତୃଷ୍ଣନୟନରେ ଅଗ୍ନିଶିଖା ଆଡ଼କୁ ଅନାଇ ଅଛନ୍ତି । ଏତେବେଳଯାଏ ପ୍ରହ୍ଲାଦ ଅଗ୍ନିଶିଖା ମଧ୍ୟରେ ଧ୍ୟାନମଗ୍ନ ଥିଲେ । ବର୍ତ୍ତମାନ ଧ୍ୟାନମଗ୍ନଚକ୍ଷୁରେ ପିତାଙ୍କ ଆଡ଼କୁ ଅନାଇଲେ । ସେ ଚାହାଣୀରେ ପ୍ରସ୍ତର ପର୍ଯ୍ୟନ୍ତ ଦ୍ରବୀଭୂତ ହୋଇଯିବ, କିନ୍ତୁ କଠିନହୃଦୟ ହିରଣ୍ୟକଶିପୁ ପ୍ରସ୍ତରସ୍ତମ୍ଭ ପରି ଠିଆ ହୋଇ ଥାନ୍ତି । ପ୍ରହ୍ଲାଦ ପିତାଙ୍କୁ ସମ୍ମୁଖରେ ଦର୍ଶନ କରି ନତମସ୍ତକ ହେଲେ । ତାହାଙ୍କର ଏତେ ଚେଷ୍ଟା ବ୍ୟର୍ଥ ହେବାର ଦେଖି ପ୍ରହ୍ଲାଦଙ୍କର ମନରେ କରୁଣାର ଉଦ୍ରେକ ହୋଇଅଛି । ତଥାପି ବିଷ୍ଣୁଙ୍କର ମହିମା କାଳେ ପିତୃହୃଦୟରେ ସ୍ଥାନ ପାଇପାରେ, ଏହା ଭାବି ଯାହା ଅନୁଭବ କରୁଥିଲେ ତାହା ପ୍ରକାଶ କରିବାକୁ ଯାଇଁ କହିଲେ, "ପିତଃ ! ଏହି ଅଗ୍ନି ପବନଦ୍ୱାରା ସନ୍ଦୀପ୍ତ ହୋଇ ମଧ୍ୟ ମୋତେ ଦଗ୍ଧ କରି ପାରି ନାହିଁ । ମୁଁ ବୋଧ କରୁଅଛି ଯେପରି ମୋର ଚତୁର୍ଦ୍ଦିଗରେ ପଦ୍ମପତ୍ରର ଶଯ୍ୟା ବିସ୍ତୃତ ହୋଇଅଛି ଏବଂ ଚତୁର୍ଦ୍ଦିଗ୍ ଶୀତଳ ବୋଧ ହେଉଅଛି ।"

ହିରଣ୍ୟକଶିପୁ ଅସ୍ତ୍ରଶସ୍ତ୍ର, ସର୍ପ, ଦନ୍ତୀ ଓ ଅଗ୍ନି ପ୍ରୟୋଗ କରି ମଧ୍ୟ ପ୍ରହ୍ଲାଦଙ୍କର କୌଣସି ଅନିଷ୍ଟ କରିପାରିଲେ ନାହିଁ । ଭକ୍ତ ପ୍ରହ୍ଲାଦ ସତ୍ୟପାଇଁ, ଭଗବାନଙ୍କ ପାଇଁ ସମସ୍ତ ଲାଞ୍ଛନା, ସମସ୍ତ ବାଧାବିଘ୍ନକୁ ହେୟ ଜ୍ଞାନ କଲେ । ଭକ୍ତର ଭାଗ୍ୟରେ ପୁଣି ଏତେ ଲାଞ୍ଛନାଭୋଗ ଥାଏ ? କିନ୍ତୁ ବଡ଼ ଆନନ୍ଦର କଥା ଯେ ଭକ୍ତ ଭଗବାନଙ୍କପାଇଁ, ସତ୍ୟପାଳନପାଇଁ ଯେଉଁ ଲାଞ୍ଛନା ଭୋଗ କରେ; ସେ ତୁମ୍ଭ ଆମ୍ଭ ଚକ୍ଷୁକୁ ଲାଞ୍ଛନାରୂପେ ପ୍ରତୀୟମାନ ହେଲେ ମଧ୍ୟ, ଭକ୍ତ ପକ୍ଷରେ ତାହା ପରମସୁଖ, ପରମଶାନ୍ତି ।

---

# ଚତୁର୍ଥ ଅଧ୍ୟାୟ

---

## ପ୍ରହ୍ଲାଦଙ୍କର ଗୁରୁଗୃହରେ ବାସ ଓ ଦାନବକୁମାର-ମାନଙ୍କ ପ୍ରତି ଉପଦେଶ

ଅନନ୍ତର ରାଜପୁରୋହିତ ଷଣ୍ଡ, ଅମର୍କ ପ୍ରଭୃତି ଭାର୍ଗବତନୟମାନେ ଦୈତ୍ୟରାଜଙ୍କୁ ସ୍ତବ କରି ସାନ୍ତ୍ୱନା ଦେଇ କହିଲେ, "ରାଜନ୍ ! ଆପଣ ଯେତେବେଳେ ଦେବତାମାନଙ୍କ ପ୍ରତି କ୍ରୁଦ୍ଧ ହୋଇଅଛନ୍ତି, ଆପଣଙ୍କର କ୍ରୋଧ ସଫଳ ହୋଇଅଛି । ଆପଣଙ୍କର ଏହି ପୁତ୍ରଟି ଜିତକ୍ଷ୍ମ, ସୁଶୀଳ, ଜିତେନ୍ଦ୍ରିୟ, ପରମ ଭକ୍ତ । ସୁତରାଂ ଆପଣ ଏହା ପ୍ରତି ଯେ କ୍ରୋଧ କରିଅଛନ୍ତି, ତାହା ପରିହାର କରନ୍ତୁ । ରାଜନ୍, ଆମ୍ଭେମାନେ ଏହି ବାଳକକୁ ଏପରି ସୁଶିକ୍ଷିତ କରିବୁଁ ଯେ ସେ ଆପଣଙ୍କଠାରେ ବଶୀଭୂତ ହୋଇ ଭବିଷ୍ୟତ୍ କାଳରେ ଆପଣଙ୍କର ଶତ୍ରୁବଂଶ ଧ୍ୱଂସ କରିବ । ଦେବରାଜ ! ଆପଣ ଜାଣନ୍ତି ଯେ, ବାଳକ ମାତ୍ରକେ ଦୋଷର ଅଧୀନ ! ସୁତରାଂ ଏହି ଶିଶୁଟି ପ୍ରତି ଏପରି କୋପାନ୍ୱିତ ହେବା ଆପଣଙ୍କର ଉଚିତ କି ? ଏହି ବାଳକ ଆମ୍ଭମାନଙ୍କର କଥାନୁସାରେ ଯଦି ଦୈତ୍ୟାରି ବିଷ୍ଣୁଙ୍କର ପକ୍ଷ ପରିତ୍ୟାଗ ନ କରେ, ତେବେ ଆମ୍ଭେମାନେ ଏହାର ବିନାଶ ନିମିତ୍ତ ଅଭିଚାର କରିବୁଁ । ଆମ୍ଭମାନଙ୍କର ସେହି ଅଭିଚାର ମନ୍ତ୍ର ଅବାର୍ଯ୍ୟ ।"

ପୁରୋହିତମାନଙ୍କର ଏହିପରି ପ୍ରାର୍ଥନା ଶୁଣି ଦୈତ୍ୟରାଜଙ୍କର ମନରେ ଆଶାର ସଞ୍ଚାର ହେଲା । ସେ ଭାବିଲେ, ଷଣ୍ଡାମର୍କ ପ୍ରଭୃତି ମୋର କୁଳପୁରୋହିତ, ସେମାନେ ଅବଶ୍ୟ ମୋର ଗୌରବ ଏବଂ ମଙ୍ଗଳ କାମନା କରନ୍ତି; ଦେଖାଯାଉ, ଏମାନଙ୍କର ତତ୍ତ୍ୱାବଧାନରେ ରହି ପ୍ରହ୍ଲାଦର ଯଦି

କୌଣସି ଶୁଭ ପରିବର୍ତ୍ତନ ହୁଏ । ସୁତରାଂ ସେ ଦୈତ୍ୟମାନଙ୍କଦ୍ୱାରା ପ୍ରହ୍ଲାଦଙ୍କୁ ଅଗ୍ନିକୁଣ୍ଡରୁ ବାହାର କଲେ । ପ୍ରହ୍ଲାଦ ଷଣ୍ଡାମର୍କ ପ୍ରଭୃତିଙ୍କ ସହିତ ରାଜସମୀପରୁ ବିଦାୟ ଗ୍ରହଣ କଲେ । ସେ ପୁନର୍ବାର ଗୁରୁଗୃହରେ ବାସ କରିବାକୁ ଲାଗିଲେ । ଗୁରୁ ତାହାଙ୍କୁ ଅନେକ ଉପଦେଶ ଦିଅନ୍ତି । ପ୍ରହ୍ଲାଦ ଉକ୍ତ ଉପଦେଶ ପାଇବା ପରେ ମଧ୍ୟେ ମଧ୍ୟେ ଅବସର ପାଇଲେ ଦାନବକୁମାରମାନଙ୍କ ନିକଟକୁ ଚାଲିଯାନ୍ତି । ସେମାନେ ପ୍ରହ୍ଲାଦଙ୍କ ପରି ବାଳକଙ୍କର ସଙ୍ଗ ଲାଭ କରି ପରମାନନ୍ଦରେ ମତ୍ତ ହୁଅନ୍ତି । ସଂସାର ମଧ୍ୟରେ ସାର କଣ, ଅସାର କଣ, ଭଲକଣ, ମନ୍ଦ କଣ, କେଉଁଟା ମୁକ୍ତିର ସେତୁ, କେଉଁଟା ବନ୍ଧନର ହେତୁ—ଏହି ସବୁ ପ୍ରହ୍ଲାଦ ସେମାନଙ୍କୁ ବୁଝାନ୍ତି ଏବଂ ସଙ୍ଗେ ସଙ୍ଗେ ବିଷ୍ଣୁ ମହିମା କୀର୍ତ୍ତନ କରନ୍ତି ।

ପ୍ରହ୍ଲାଦ କହନ୍ତି, "ହେ ମହାସୁ ଭ୍ରାତୃଗଣ, ହେ ଦୈତ୍ୟତନୟବୃନ୍ଦ ! ମୁଁ ପରମାର୍ଥବିଷୟକ ଉପଦେଶ ଦେଉଅଛି, ଶ୍ରବଣ କର । ମୋର ଉପଦେଶ ବାକ୍ୟ ମିଥ୍ୟା ବା ଅନ୍ୟଥା ମନେ କର ନାହିଁ, କାରଣ ମୁଁ ଗୁରୁଙ୍କ ପରି ଧନଲୋଭରେ ତୁମ୍ଭମାନଙ୍କୁ ଉପଦେଶ ଦେଉ ନାହିଁ । ଦେଖ, ପ୍ରାଣୀମାନେ ପ୍ରଥମତଃ ଜନ୍ମଗ୍ରହଣ କରନ୍ତି, ପରେ କ୍ରମଶଃ ବାଲ୍ୟାବସ୍ଥା ଓ ଯୌବନାବସ୍ଥା ପ୍ରାପ୍ତ ହୁଅନ୍ତି । ଯୌବନପରେ ବାର୍ଦ୍ଧକ୍ୟ ଉପସ୍ଥିତ ହୁଏ । ଏହା କେହି ଅତିକ୍ରମ କରି ପାରେ ନାହିଁ । ଦୈତ୍ୟେଶ୍ୱର ତନୟଗଣ, ଜୀବମାନଙ୍କର ବାର୍ଦ୍ଧକ୍ୟର ଅବସାନ ହେଲେ ସେମାନେ ମୃତ୍ୟୁମୁଖରେ ପତିତ ହୁଅନ୍ତି । ଯେ ବ୍ୟକ୍ତି ମରେ, ତାହାର ପୁଣି ଜନ୍ମ ହୁଏ—ଏହାର ଅନ୍ୟଥା ହୁଏ ନାହିଁ । ଶାସ୍ତ୍ରରେ ଏହାର ବହୁ ପ୍ରମାଣ ମିଳେ; କିନ୍ତୁ ପାପପୁଣ୍ୟରୂପ ପୂର୍ବଜନ୍ମର କର୍ମ ବ୍ୟତୀତ ଜନ୍ମ ହୁଏ ନାହିଁ । ଗର୍ଭବାସରୁ ଆରମ୍ଭ କରି ପୁନର୍ଜନ୍ମ ପର୍ଯ୍ୟନ୍ତ ଯେ ସମସ୍ତ ଅବସ୍ଥା ଘଟେ, ସେ ସମସ୍ତ ଦୁଃଖମୟ । ଯେଉଁମାନେ ଅଳ୍ପବୁଦ୍ଧି, ସେମାନେ କ୍ଷୁଧା-ନିବୃତ୍ତି, ତୃଷ୍ଣା-ଶାନ୍ତି,

ଶୀତ୍ରାପନସ୍ୱନ ପ୍ରଭୃତିକୁ ସୁଖସାଧନ ବୋଲି ମନେ କରନ୍ତି । କିନ୍ତୁ ସେ ସମସ୍ତ ଦୁଃଖମୟ; କାରଣ ଅନ୍ନପାନାଦି ସଂଗ୍ରହ କରିବା ପାଇଁ ପ୍ରଭୂତ କଷ୍ଟ ସ୍ୱୀକାର କରିବାକୁ ପଡ଼େ । ଯେ ବ୍ୟକ୍ତି ମାଂସ, ରକ୍ତ, ବସ୍ତା, ମୂତ୍ର, ସ୍ନାୟୁ, ମଜ୍ଜା ଏବଂ ଅସ୍ଥିଯୁକ୍ତ ଦେହ ପ୍ରତି ଆସକ୍ତ ହୋଇ ମୁଁ, ମୋର ପ୍ରଭୃତି ଅହଂକାରଯୁକ୍ତ ବାକ୍ୟ ପ୍ରୟୋଗ କରେ, ସେ ମୂଢ଼ ନରକରେ ମଧ୍ୟ ଆନନ୍ଦ ଲାଭ କରିପାରେ । ଶୀତରେ ଅଗ୍ନି, ତୃଷ୍ଣାରେ ଜଳ, କ୍ଷୁଧାରେ ଅନ୍ନ ସୁଖକର ବୋଲି ବୋଧ ହୁଏ । ସୁତରାଂ ଶୀତାଭାବେ ଅଗ୍ନି, ତୃଷ୍ଣାଭାବେ ଜଳ ଓ କ୍ଷୁଧାଭାବେ ଅନ୍ନ ସୁଖପ୍ରଦ ହେବା ତେଣିକି ଥାଉ, ସମଧିକ ଦୁଃଖ ପ୍ରଦାନ କରେ । ତେଣୁ ଏ ସଂସାରରେ ପ୍ରକୃତ ସୁଖ କିଛି ନାହିଁ ।

"ଦୈତ୍ୟତନୟବୃନ୍ଦ ! ଜୀବମାନେ ଯେ ପରିମାଣରେ ବିଷୟ ଭୋଗରେ ଲିପ୍ତ ହୁଅନ୍ତି, ସେହି ପରିମାଣରେ ସେମାନଙ୍କ ଅନ୍ତଃକରଣରେ ଦୁଃଖ ବଦ୍ଧମୂଳ ହେଉଥାଏ । ପ୍ରାଣିଗଣ ଏ ସଂସାରରେ ଯେଉଁ ପରିମାଣରେ ବନ୍ଧୁବାନ୍ଧବ ବଢ଼ାଉଥାନ୍ତି, ସେହି ପରିମାଣରେ ସେମାନଙ୍କ ହୃଦରେ ଶୋକଶଲ୍ୟ ବଦ୍ଧ ହେଉଥାଏ । ସଂସାରୀ ବ୍ୟକ୍ତି ଯେ କୌଣସି ଦେଶରେ ଅବସ୍ଥାନ କଲେ ମଧ୍ୟ ଧନାଦି ଭୋଗ୍ୟବସ୍ତୁପୂର୍ଣ୍ଣ ଗୃହ ଅଡ଼କୁ ତାଙ୍କର ଦୃଷ୍ଟି ପଡ଼ିଥାଏ । ଯଦି ଦୈବାତ୍ ଗୃହସ୍ଥିତ ଧନରତ୍ନାଦି ନଷ୍ଟ, ଦଗ୍ଧ ବା ଅପହୃତ ହୁଏ, ତାହା ହେଲେ ସେହି ଗୃହୀ ଯେଉଁଠାରେ ଥିଲେ ମଧ୍ୟ ତାଙ୍କର ଦୁଃଖ ଉପସ୍ଥିତ ହୁଏ । ସୁତରାଂ ଏହି ଜଗତରେ ଜନ୍ମ ହେଲେ ନିରନ୍ତର ମହାଦୁଃଖ ଭୋଗ କରିବାକୁ ପଡ଼େ । ମୃତ୍ୟୁ ପରେ ଯେ ଯମଯାତନା, ତାହା ସାମାନ୍ୟ ଦୁଃଖପ୍ରଦ ନୁହେ । ଗର୍ଭସଙ୍କ୍ରମଣ ବେଳେ ମଧ୍ୟ ସାତିଶୟ ଦୁଃଖ ଭୋଗ କରିବାକୁ ହୁଏ । ତୁମ୍ଭେମାନେ ଅନୁମାନ କରି ଦେଖିଲ ଭାଇ, ଯେତେଦିନ ଆମ୍ଭେମାନେ ଗର୍ଭରେ ଥାଉଁ, ସେତେଦିନ କଣ ଲେଶ ମାତ୍ର ସୁଖ ଅନୁଭବ କରୁଁ ? ଅତଏବ ଏହି ଜଗତ ନିଶ୍ଚିତ ସର୍ବବିଧ ଦୁଃଖର ଆଗାର ।

"ଏହି ସଂସାରଧାମରେ ଈଶ୍ବର ଏକମାତ୍ର ପରମ ଗତି । ତୁମ୍ଭେମାନେ ମନେକର ନାହିଁ ଯେ, ଆମ୍ଭେମାନେ ସାମାନ୍ୟ ବାଳକ, ଆମ୍ଭେମାନେ କଣ ଧର୍ମାଚରଣ କରିବୁଁ ? ଏହି ଦେହରେ ଯେ ଆତ୍ମା ଅବସ୍ଥିତ କରୁଅଛନ୍ତି ସେ ନିତ୍ୟ । ଜନ୍ମ, ବାଲ୍ୟ, ଯୌବନ, ଜରା ପ୍ରଭୃତି ସମୁଦାୟ ଦେହର ଧର୍ମ—ଆତ୍ମାର ନୁହେ । ଅର୍ଥାତ୍ ଆତ୍ମା କେବେହେଁ ବାଳକ, ଯୁବକ ବା ବୃଦ୍ଧରୂପେ ପରିଗଣିତ ହୁଏ ନାହିଁ । ବାଳକ ମନେ କରେ, 'ମୁଁ ବର୍ତ୍ତମାନ ବାଳକ, ଏହି ଅବସ୍ଥାରେ ଯଥେଚ୍ଛା ବିଚରଣ କରେଁ; ଯୁବକ ହେଲେ ଶ୍ରେୟୋଲାଭ ପାଇଁ ଯତ୍ନ କରିବ ।' ଯୁବକ ଭାବେ, 'ମୁଁ ବର୍ତ୍ତମାନ ଯୌବନରେ ଉପସ୍ଥିତ । କିଛି ଦିନ ଭୋଗ ଦଖଲ କରି ବାର୍ଦ୍ଧକ୍ୟରେ ଆତ୍ମାର ମଙ୍ଗଳନିମିତ୍ତ ଧର୍ମସାଧନ କରିବି ।' ବୃଦ୍ଧ ଭାବେ, 'ଏକ୍ଷଣି ମୋର ସମସ୍ତ ଇନ୍ଦ୍ରିୟ ଅପଟୁ ହେବାରୁ କାର୍ଯ୍ୟରେ ଅକ୍ଷମ ହୋଇ ପଡ଼ିଅଛି । ମୁଁ ଯେତେବେଳେ କାର୍ଯ୍ୟରେ କ୍ଷମ ଥିଲି, ତେତେବେଳେ ଦୁର୍ବୁଦ୍ଧିପ୍ରଯୁକ୍ତ କିଛି କରି ନାହିଁ । ବର୍ତ୍ତମାନ କଣ କରିବ ?' ଜୀବମାନେ ଯଦବା ଜନପିପାସାରେ ନିତାନ୍ତ ଆକୁଳ, ସେମାନେ ଏହିପରି ଦୁର୍ବଣାଦ୍ବାରା ଆକୃଷ୍ଟ ହୋଇ ଆତ୍ମାର ହିତ ସାଧନ କରି ପାରନ୍ତି ନାହିଁ । ଅଜ୍ଞ ଜୀବମାନେ ବାଲ୍ୟକାଳରେ କ୍ରୀଡ଼ାରେ ଆସକ୍ତ ଥାନ୍ତି; ଯୌବନ କାଳରେ ବିବିଧ ବିଷୟଭୋଗରେ ପ୍ରବୃତ୍ତ ହୁଅନ୍ତି, ବୃଦ୍ଧାବସ୍ଥା ଉପସ୍ଥିତ ହେଲେ ଅକ୍ଷମତାଯୋଗୁଁ ବୃଥା ଭାବନାରେ ସମୟ ଅତିବାହିତ କରନ୍ତି । କୌଣସି ସମୟରେ ପରମାର୍ଥଚିନ୍ତା ସେମାନଙ୍କ ହୃଦୟରେ ସ୍ଥାନ ପାଏ ନାହିଁ । ଅତଏବ ବାଲ୍ୟକାଳରେ ଅନ୍ତଃକରଣରେ ବୈରାଗ୍ୟ ଅବଲମ୍ବନ କରି ଶ୍ରେୟୋପ୍ରାପ୍ତି ନିମିତ୍ତ ସର୍ବଦା ଯତ୍ନବାନ୍ ହେବ ।

"ମୁଁ ତୁମ୍ଭମାନଙ୍କୁ ଯେ ସମସ୍ତ ଉପଦେଶ ଦେଲି, ତାହା ଯଦି ମିଥ୍ୟା ବୋଲି ବୋଧ ନ ହୁଏ, ତେବେ ମୋର ସନ୍ତୋଷବିଧାନ ନିମିତ୍ତ ଈଶ୍ବରଙ୍କୁ

ସ୍ମରଣ କର । ସେ ତୁମ୍ଭମାନଙ୍କୁ ସଂସାରବନ୍ଧନରୁ ମୁକ୍ତ କରିବେ । ତୁମ୍ଭେମାନେ ଭାବି ଦେଖ, ତାଙ୍କୁ ସ୍ମରଣରେ ପରିଶ୍ରମ ବା କଣ ? ଅଥଚ ତାଙ୍କୁ ସ୍ମରଣ କଲେ ସେ ମଙ୍ଗଳ କରନ୍ତି ଓ ପାପ ବିନଷ୍ଟ ହୁଏ । ଅତଏବ ଦିବାରାତ୍ର ସେହି ବିଷ୍ଣୁଙ୍କୁ ସ୍ମରଣ କର । ସର୍ବ ପ୍ରାଣୀର ଅନ୍ତରାତ୍ମା ସେହି ବିଷ୍ଣୁ ତାହାଙ୍କଠାରେ ତୁମ୍ଭର ଅନ୍ତଃକରଣ ସମାହିତ ହେଉ । ପ୍ରାଣୀମାତ୍ରକେ ସେହି ଭଗବାନଙ୍କର ଅଧିଷ୍ଠାନ; ଅତଏବ ସର୍ବଜୀବନ ପ୍ରତି ତୁମ୍ଭମାନଙ୍କର ବନ୍ଧୁବତ୍ ବ୍ୟବହାର ହେଉ । ସେ ତୁମ୍ଭମାନଙ୍କର ରାଗଦ୍ୱେଷରୁ ଜାତ ସମୁଦାୟ ଦୁଃଖ ଦୂର କରନ୍ତୁ । ଏହି ନିଖିଳ ଜଗତ୍ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକରୂପ ତ୍ରିବିଧ ତାପରେ ଅଭିଭୂତ; ଅତଏବ ଜଗତରେ ସମସ୍ତ ଶୋଚନୀୟ । ଏପରି ଅବସ୍ଥାରେ କେଉଁ ଜ୍ଞାନବାନ ବ୍ୟକ୍ତି ସେମାନଙ୍କ ପ୍ରତି ଦ୍ୱେଷ ପ୍ରକାଶ କରି ପାରେ ? ଅନ୍ୟାନ୍ୟ ଲୋକ ବିଦ୍ୱାନ, ଧନସମ୍ପନ୍ନ ଓ ଉନ୍ନତ ଅବସ୍ଥାରେ ଅବସ୍ଥିତ ହୋଇ ସୁଖସ୍ୱଚ୍ଛନ୍ଦରେ କାଳଯାପନ କରୁଅଛନ୍ତି; ମୁଁ ଏକା ଧନାଦି ଉପାର୍ଜନରେ ଅଶକ୍ତ—ଏହା ଭାବି କାହାରି ପ୍ରତି ହିଂସା କରିବ ନାହିଁ । ବରଂ ସେହି ସମସ୍ତ ଲୋକଙ୍କ ପ୍ରତି ପ୍ରୀତି ପ୍ରକାଶ କରିବ । କାରଣ, ଯେ ହିଂସା କରେ ତାହାର ଅନିଷ୍ଟ ବ୍ୟତୀତ କୌଣସି ଇଷ୍ଟଲାଭ ହୁଏ ନାହିଁ । ଯେଉଁମାନେ ଶତ୍ରୁମାନଙ୍କ ପ୍ରତି ମଧ୍ୟ ଈର୍ଷା କରନ୍ତି, ସେମାନେ ମହାମୋହରେ ଅଛନ୍ତି ବୋଲି ଜ୍ଞାନୀମାନେ ଦୁଃଖିତ ମନରେ ଆକ୍ଷେପ ଓ ଶୋକ ପ୍ରକାଶ କରିଥାନ୍ତି ।

"ଦୈତ୍ୟଗଣ ! ବର୍ତ୍ତମାନ ପରମାର୍ଥ ବିଷୟରେ ତତ୍ତ୍ୱଜ୍ଞମାନଙ୍କର ଯାହା କର୍ତ୍ତବ୍ୟ, ତାହାର ସାରାଂଶ କହୁଅଛି, ଶୁଣ । ଭଗବାନ୍ ବିଷ୍ଣୁ ସର୍ବଜୀବ ମଧ୍ୟରେ ଅବସ୍ଥାନ କରୁଅଛନ୍ତି । ଏହି ଚରାଚର ଜଗତ୍ ସମୁଦାୟ ବିଷ୍ଣୁମୟ । ଅତଏବ ଜ୍ଞାନୀମାନେ ସମସ୍ତଙ୍କୁ ଆପଣାଠାରୁ ଅଭିନ୍ନ

ମନେ କର ସେମାନଙ୍କର ହିତ ସାଧନ କରନ୍ତି । ଅବ, ଅମ୍ଭେମାନେ ରାଗ ଦ୍ୱେଷ ପ୍ରଭୃତି ପରିତ୍ୟାଗ କରି ଯଦ୍ଧିରେ ମୁକ୍ତିଲାଭ ହେବ, ତାହା କରିବା । ଯାହା ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ମେଘମାଳା, ବରୁଣ, ସିଦ୍ଧ, ରାକ୍ଷସ, ଯକ୍ଷ, ଦୈତ୍ୟ, ଭୁଜଙ୍ଗ, କିନ୍ନର, ମନୁଷ୍ୟ, ପଶୁ, ଶାରୀରିକ ବା ମାନସିକ ଦୋଷ, ଜ୍ୱର, ଅତିସାର ପ୍ରଭୃତି ରୋଗ, ଦ୍ୱେଷ, ଈର୍ଷ୍ୟା, ମାତ୍ସର୍ଯ୍ୟ, ରାଗ, ଲୋଭ ପ୍ରଭୃତି ମାନସିକ ଦୋଷଦ୍ୱାରା କେବେହେଁ କ୍ଷୟପ୍ରାପ୍ତ ହୁଏ ନାହିଁ; ଯାହା ଅତ୍ୟନ୍ତ ନିର୍ମଳ ଓ ନିତ୍ୟ, ନିର୍ମଳ ଅନ୍ତଃକରଣରେ ବିଷ୍ଣୁଙ୍କର ଧ୍ୟାନ କଲେ ସେହି ପରମ ମୁକ୍ତି ଲାଭ କରିପାରି ପାରେ ।

"ଦୈତ୍ୟବୃନ୍ଦ ! ଏହି ଅସାର ସଂସାରରେ ଦେବ, ଦାନବ, ଗନ୍ଧର୍ବ, କିନ୍ନର, ଯକ୍ଷ, ରାକ୍ଷସ, ମନୁଷ୍ୟ, ପଶୁ, ପକ୍ଷୀ ପ୍ରଭୃତି ନାନା ଯୋନିରେ ଜନ୍ମ ହୋଇଥାଏ । ଏଥି ମଧ୍ୟରୁ ଯେ କୌଣସି ଯୋନିରେ ତୁମ୍ଭେମାନେ ଜନ୍ମ-ଗ୍ରହଣ କଲେ ସେହି ଜନ୍ମର ଭୋଗ୍ୟ ବସ୍ତୁରେ ତୁମ୍ଭମାନଙ୍କର ତୃପ୍ତି ସାଧନ ହୁଏ ନାହିଁ । ଅତଏବ ତୁମ୍ଭେମାନେ ସର୍ବତ୍ର ସମଦର୍ଶୀ ହୁଅ ଓ ସମସ୍ତଙ୍କୁ ଆତ୍ମବତ୍ ଜ୍ଞାନ କର । ମୁଁ ତୁମ୍ଭମାନଙ୍କ ନିକଟରେ ଏହି ସାର କଥା କହୁଅଛି ଯେ, "ସମତ୍ୱମାରାଧନମଚ୍ୟୁତସ୍ୟ"—ଅର୍ଥାତ୍ ସର୍ବତ୍ର ସମଦର୍ଶୀ ହେବା ଏବଂ ସର୍ବ ପ୍ରାଣୀକୁ ଆତ୍ମବତ୍ ଜ୍ଞାନ କରିବା ଭଗବାନ ବିଷ୍ଣୁଙ୍କର ଆରାଧନା । ଭଗବାନ୍ ବିଷ୍ଣୁ ପ୍ରସନ୍ନ ହେଲେ ଜଗତର କୌଣସି ବସ୍ତୁ ଦୁଷ୍ପ୍ରାପ୍ୟ ଥାଏ ନାହିଁ । ତାହାଙ୍କଠାରେ ଧର୍ମ, ଅର୍ଥ ଓ କାମ ପ୍ରାର୍ଥନା କରିବା ଉଚିତ ନୁହେ । କାରଣ ଧର୍ମାର୍ଥକାମରୂପ ତ୍ରିବର୍ଗ ଅତି ସାମାନ୍ୟ ବସ୍ତୁ । ତୁମ୍ଭେମାନେ ନିଷ୍କାମ ହୋଇ ବ୍ରହ୍ମରୂପ ବୃକ୍ଷର ଆଶ୍ରୟ କର । ତାହା ହେଲେ ଅବଶ୍ୟ ମୋକ୍ଷରୂପ ମହାଫଳ ପ୍ରାପ୍ତ ହେବ ।"



# ପଞ୍ଚମ ଅଧ୍ୟାୟ

---

## ବିଷପ୍ରୟୋଗ

ପ୍ରହ୍ଲାଦ ଯେତେବେଳେ ଦୈତ୍ୟକୁମାରମାନଙ୍କ ନିକଟରେ ବିଷ୍ଣୁ-ମାହାତ୍ମ୍ୟ କୀର୍ତ୍ତନରେ ନିମଗ୍ନ, ସେତେବେଳେ ଦୈତ୍ୟମାନେ ହିରଣ୍ୟକଶିପୁର ଭୟରେ ତ୍ରସ୍ତ । ପ୍ରହ୍ଲାଦଙ୍କର କମନୀୟ ରୂପ ଏବଂ ମଧୁର କଥା ଦୈତ୍ୟମାନଙ୍କର ମନୋହରଣ କରୁଥାଏ । କିନ୍ତୁ ଯାଳେ ଦୈତ୍ୟରାଜ ଏ ସମସ୍ତ କଥା ଶୁଣିବେ ଏବଂ ଦୈତ୍ୟମାନଙ୍କର ପ୍ରାଣଦଣ୍ଡ ହେବ, ସେଥିପାଇଁ ସେମାନେ ବହୁଦିନ ପ୍ରହ୍ଲାଦଙ୍କୁ ତାଙ୍କର ପଥ ଅନୁସରଣ କରିବାକୁ ଦେଲେ ନାହିଁ । ଦୈତ୍ୟରାଜ ଏ ସମସ୍ତ କଥା ଜାଣିବା ଆଗରୁ ତାହାଙ୍କୁ ନ ଜଣାଇଲେ ଘୋର ବିପଦର ସମ୍ଭାବନା । ସୁତରାଂ କତିପୟ ଦୈତ୍ୟ ହିରଣ୍ୟକଶିପୁ ନିକଟରେ ନିବେଦନ କଲେ, "ଦୈତ୍ୟରାଜ ! ପ୍ରହ୍ଲାଦ ଗୁରୁଗୃହରେ ଅବସ୍ଥାନ କରି ସେଠାରେ ବିଷ୍ଣୁ-ମାହାତ୍ମ୍ୟ ପ୍ରଚାର କରୁଅଛନ୍ତି ଏବଂ ତଦ୍ଦ୍ୱାରା ଦୈତ୍ୟକୁମାରମାନଙ୍କର ସମୂହ ଅନିଷ୍ଟ ସାଧନ କରୁଅଛନ୍ତି ।"

ଦୈତ୍ୟରାଜ ଅସ୍ତ୍ରଶସ୍ତ୍ର, ସର୍ପ, ଦନ୍ତୀ ଓ ଅଗ୍ନି ପ୍ରୟୋଗ କରିଅଛନ୍ତି । ବର୍ତ୍ତମାନ ଅନ୍ୟ ଏକ ମାରଣ ଉପାୟ ଆବିଷ୍କାର କଲେ । ସେ କାଳ-ବିଳମ୍ବ ନ' କରି ପାଚକମାନଙ୍କୁ ଡାକି କହିଲେ, "ସୁପକାରଗଣ, ମୋର ସେହି ପୁତ୍ରଟିର ଦୁର୍ବୁଦ୍ଧି ଘଟିଅଛି । ସେହି ଦୁଷ୍ଟ ବାଳକ ଅନ୍ୟାନ୍ୟ ବାଳକମାନଙ୍କୁ କୁପଥରେ ପଥିକ କରିବା ପାଇଁ ଉପଦେଶ ଦେଉଅଛି । ଅତଏବ ଅବିଳମ୍ବେ ତାହାକୁ ବିନାଶ କର । ତୁମ୍ଭେମାନେ ଅତି

ଗୋପନରେ ତାହାର ସମସ୍ତ ଭକ୍ଷ୍ୟ ଦ୍ରବ୍ୟ ସହିତ ହଳାହଳ ବିଷ ପ୍ରଦାନ କର ଏବଂ ଯଦ୍ଦ୍ୱାରା ସେ ପୂର୍ବରୁ କିଛି ବୁଝିବାକୁ ସମର୍ଥ ନ ହୁଏ, ଏହିରୂପେ ସେହି ପାପାତ୍ମାକୁ ମାରି ପକାଅ । ଏ ବିଷୟରେ କିଛିମାତ୍ର ବିଳମ୍ବ କର ନାହିଁ ।”

ପାଚକମାନେ ପ୍ରହ୍ଲାଦଙ୍କୁ କିପରି ବିଷ ପ୍ରଦାନ କରିବେ, ସେମାନଙ୍କର ହାତ ବା କିପରି ବିଷପ୍ରୟୋଗରେ ଉଦ୍ୟତ ହେବ—ଏହି କଥା ଭାବିବାକୁ ଲାଗିଲେ । ପ୍ରହ୍ଲାଦ ଯେ ସାମାନ୍ୟ ବ୍ୟକ୍ତି ନୁହନ୍ତି, ଏ କଥା ମଧ୍ୟ ସେମାନେ ଜାଣି ସାରିଲେଣି । ତଥାପି ପ୍ରାଣର ମାୟା ବଡ଼ ମାୟା । ସେମାନେ ଦୈତ୍ୟରାଜଙ୍କ ଆଜ୍ଞା ପାଳନ କରିବାକୁ ପ୍ରସ୍ତୁତ ରହିଲେ । ପ୍ରହ୍ଲାଦ ଗୁରୁଗୃହରୁ ଅତି ସମାଦର ସହିତ ଗୃହକୁ ଆନୀତ ହେଲେ । ଏଥର ପିତା ତାଙ୍କୁ ଅଜ୍ଞ ସମ୍ବୋଧନ କରି ଡାକିଲେ ନାହିଁ, କାରଣ ସେ ଜାଣନ୍ତି, ଏଥର ଅଚିରରେ ସମସ୍ତ କାର୍ଯ୍ୟ ସମ୍ପନ୍ନ ହେବ । ପୁଣି ବିଷପାନଦ୍ୱାରା ଯାହାର ମରଣ ଅନତି-ବିଳମ୍ବେ ସଂଘଟିତ ହେବ, ତାହାକୁ ଦେଖି ତାହା ପ୍ରତି ମାୟାସକ୍ତ ହେବାର କି ଦରକାର ? ପାଚକମାନେ ଅନ୍ନ ସହିତ ବିଷ ମିଶ୍ରିତ କରି ପ୍ରହ୍ଲାଦଙ୍କୁ ନିବେଦନ କଲେ—କିନ୍ତୁ ସେମାନଙ୍କର ମୁଖଶ୍ରୀ ସଙ୍ଗେ ସଙ୍ଗେ ମ୍ଳାନ ହୋଇଗଲା । ପ୍ରହ୍ଲାଦ ସେହି ମୁଖ ଆକୃତିକୁ ଅନାଇ ସମସ୍ତ ଘଟଣା ବୁଝି ପାରିଲେ । ସେ ଭଗବାନ୍ ଅନନ୍ତ ଦେବଙ୍କ ନାମ ଉଚ୍ଚାରଣ କରି ତାହାଙ୍କୁ ସେହି ଖାଦ୍ୟ ନିବେଦନ କଲେ । ତତ୍ପରେ ହଳାହଳ ବିଷ ମିଶ୍ରିତ ଅନ୍ନ ଅକୁଣ୍ଠିତ ଚିତ୍ତରେ ଭୋଜନ କରିବାକୁ ଲାଗିଲେ । ଅନନ୍ତଙ୍କ ନାମ କୀର୍ତ୍ତନ ମାତ୍ରକେ ସେହି ବିଷ ନିସ୍ତେଜ ହୋଇ ଯାଇଥିଲା । ସୁତରାଂ ପ୍ରହ୍ଲାଦ ତାହା ଭକ୍ଷଣ କରି ଅବିକୃତ ଶରୀର ଓ ମନରେ ଜୀର୍ଣ୍ଣ କରି ପକାଇଲେ । ପ୍ରହ୍ଲାଦ ପୂର୍ବେ ଯେପରି ପରେ ମଧ୍ୟ ସେହିପରି ହୃଷ୍ଟଚିତ୍ତରେ ଅବସ୍ଥାନ କରିବାକୁ ଲାଗିଲେ । ଏଣେ ପାଚକ–

ମାନେ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରୁଛନ୍ତି ଯେ, ପ୍ରହ୍ଲାଦଙ୍କ ମୃତ୍ୟୁ ହେଇ ଘଟିଲା ପରି । ଅବଶେଷରେ ସେମାନେ ପ୍ରହ୍ଲାଦଙ୍କୁ ଉକ୍ତ ବିଷ ଜୀର୍ଣ୍ଣକରି ପକାଇବାର ଦେଖି ସାତିଶୟ ସନ୍ତୁଷ୍ଟ ହୋଇ ଦୈତ୍ୟରାଜଙ୍କ ନିକଟରେ ଉପସ୍ଥିତ ହେଲେ । ସେମାନେ ଦୈତ୍ୟରାଜଙ୍କୁ ଭୟବିହ୍ୱଳ ପ୍ରାଣରେ ନମସ୍କାରପୂର୍ବକ କହିଲେ, "ଦୈତ୍ୟରାଜ ! ଅମ୍ଭେମାନେ ଆପଣଙ୍କର ପୁତ୍ରଙ୍କୁ ଅନ୍ନ ସହିତ ଭୀଷଣ ବିଷ ପ୍ରଦାନ କରିଥିଲୁଁ; କିନ୍ତୁ ଅହୋ ! ସେ ତାହା ଜୀର୍ଣ୍ଣକରି ପକାଇଅଛି । ବର୍ତ୍ତମାନ ଅମ୍ଭମାନଙ୍କର ଉପାୟ ?"



## ଷଷ୍ଠ ଅଧ୍ୟାୟ



## ପୁରୋହିତମାନଙ୍କ ପ୍ରତି ପ୍ରହ୍ଲାଦଙ୍କ ଉପଦେଶ

ଅସ୍ତ୍ର ଶସ୍ତ୍ର, ସର୍ପ, ଦନ୍ତୀ, ଅଗ୍ନି ଓ ବିଷ ପ୍ରୟୋଗ ବ୍ୟର୍ଥ ହେଲା । ଇତିପୂର୍ବେ ରାଜପୁରୋହିତମାନେ ଦୈତ୍ୟରାଜଙ୍କୁ ଏହି କଥା କହି ଆଶ୍ୱାସନା ଦେଇଥିଲେ ଯେ, "ଏଥର ଆମ୍ଭମାନଙ୍କ ଶିକ୍ଷାରେ ପ୍ରହ୍ଲାଦର ପରିବର୍ତ୍ତନ ନିଶ୍ଚିତ । ଏ ଥର ସେ ଆମ୍ଭମାନଙ୍କ ଗୃହରେ ବାସ କରୁ—ଆପଣଙ୍କର କୁଳର ଗୌରବ ହୋଇ ଆପଣଙ୍କ ଶତ୍ରୁପକ୍ଷକୁ ବିନାଶ କରିବ । ଯଦି ଏହା ନ ହୁଏ—ଯଦି ପ୍ରହ୍ଲାଦର କୌଣସି ପରିବର୍ତ୍ତନ ନ ହୁଏ, ତେବେ ଆମ୍ଭେମାନେ ଅବ୍ୟର୍ଥ ଅଭିଚାର ମନ୍ତ୍ର ପ୍ରୟୋଗ ଦ୍ୱାରା ନିଶ୍ଚୟ ତାହାର ପ୍ରାଣ ବିନାଶ କରିବୁଁ ।" କିନ୍ତୁ ଫଳରେ ପ୍ରହ୍ଲାଦ ଗୁରୁ-ଗୃହରେ ବାସକରି ବିଷ୍ଣୁ ମହିମା ନିଜେ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ଦାନବକୁମାରମାନଙ୍କୁ ମଧ୍ୟ ବୈଷ୍ଣବ କରିବାକୁ ଲାଗିଲେ । ଏଣେ ବିଷ ପ୍ରୟୋଗ ମଧ୍ୟ ବ୍ୟର୍ଥ ହେଲା । ସୁତରାଂ ପୁରୋହିତମାନଙ୍କର ଆଶ୍ୱାସନା ବାଣୀ ଦୈତ୍ୟରାଜଙ୍କର ସ୍ମୃତିପଥରେ ଉଦିତ ହେଲା । ସେ ସେମାନଙ୍କୁ ଡକାଇ କହିଲେ, "ଦୈତ୍ୟପୁରୋହିତବର୍ଗ ! ତୁମ୍ଭେମାନେ ସତ୍ୱର ହୁଅ । ପ୍ରହ୍ଲାଦର ଆଶୁ ବିନାଶ ନିମିତ୍ତ ଶୀଘ୍ର ଅଭିଚାର କ୍ରିୟାର ଅନୁଷ୍ଠାନ କର । ଏ ବିଷୟରେ କ୍ଷଣମାତ୍ର ବିଳମ୍ବ ଅନୁଚିତ ।"

ଦୈତ୍ୟକୁଳର ପୁରୋହିତମାନେ ପ୍ରହ୍ଲାଦଙ୍କ ନିକଟକୁ ଗମନ କଲେ । ସେମାନେ ଦେଖିଲେ, ପ୍ରହ୍ଲାଦ ପିତାଙ୍କର ଏତେ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ମଦମତ୍ତ ହୋଇ ନାହାନ୍ତି—ପରନ୍ତୁ ବିନୟାବନତ ।

ପୁରୋହିତମାନେ ତାହାଙ୍କୁ ସାନ୍ତ୍ୱନା କରି କହିଲେ, "ଆୟୁଷ୍ମନ୍ ! ତୁମ୍ଭେ ତ୍ରୈଲୋକ୍ୟବିଖ୍ୟାତ ବ୍ରହ୍ମାଙ୍କ ବଂଶରେ ଜନ୍ମଲାଭ କରିଅଛ । ବିଶେଷତଃ ତୁମ୍ଭେ ଦୈତ୍ୟମାନଙ୍କର ଅଧିପତି ହିରଣ୍ୟକଶିପୁଙ୍କର ପୁତ୍ର । ତୁମ୍ଭର ପିତା ସମୁଦାୟ ଲୋକର ଆଶ୍ରୟ । ତୁମ୍ଭେ ମଧ୍ୟ ତୁମ୍ଭ ପିତାଙ୍କ ପରି ସମସ୍ତଙ୍କର ଆଶ୍ରୟ ହେବ । ଅତଏବ ତୁମ୍ଭେ ଶତ୍ରୁପକ୍ଷର ସ୍ତୁତିପାଠପୂର୍ଣ୍ଣ ବାକ୍ୟ ପରିତ୍ୟାଗ କର । ତୁମ୍ଭର ପିତା ଯେ ଗୁରୁମାନଙ୍କର ପରମଗୁରୁ ।"

ପ୍ରହ୍ଲାଦ ପୁରୋହିତମାନଙ୍କର ଏହି କଥା ଶୁଣି ବିନୟନମ୍ର ବଚନରେ କହିଲେ, "ଆପଣମାନେ ଯାହା କହୁଅଛନ୍ତି, ତାହା ସତ୍ୟ । ବ୍ରହ୍ମାଙ୍କର ପୁତ୍ର ମରୀଚି, ମରୀଚିଙ୍କର ପୁତ୍ର କଶ୍ୟପ, କଶ୍ୟପଙ୍କର ପୁତ୍ର ହିରଣ୍ୟକଶିପୁ ପ୍ରଭୃତି । ବ୍ରହ୍ମାଙ୍କର ଏହି ବଂଶ ଯେ ତ୍ରିଭୁବନ ମଧ୍ୟରେ ଶ୍ଲାଘ୍ୟ, ଏହା କିଏ ଅସ୍ୱୀକାର କରି ପାରେ ? ଏହି ନିଖିଳ ଜଗତ ମଧ୍ୟରେ ମୋର ପିତା ଯେ କାର୍ଯ୍ୟଦ୍ୱାରା ସର୍ବଶ୍ରେଷ୍ଠ ହୋଇଅଛନ୍ତି, ତାହା ସତ୍ୟ; ମୋର ପିତା ସମସ୍ତ ଗୁରୁ ଅପେକ୍ଷା ପରମ ଗୁରୁ, ଏ କଥାରେ ମଧ୍ୟ କିଛି ଭ୍ରାନ୍ତି ଲକ୍ଷିତ ହେଉ ନାହିଁ । ପିତା ଯେ ପରମଗୁରୁ ଏବଂ ତାହାଙ୍କୁ ଯେ ପରମ ଯତ୍ନ ସହିତ ପୂଜା କରିବାକୁ ହେବ, ସେ ବିଷୟରେ ଲେଶ ମାତ୍ର ସନ୍ଦେହ ନାହିଁ ଏବଂ ମୁଁ ମନେ କରେ ଯେ, ସେ ବିଷୟରେ ମୁଁ ଆଦୌ ଅପରାଧୀ ନୁହେଁ । ପୁଣି ଆପଣମାନେ ଯେ କହିଲେ, 'କି ନିମିତ୍ତ ଅନନ୍ତଙ୍କର ଆଶ୍ରୟ ଗ୍ରହଣ କରୁଅଛ ?' ଏପରି ବାକ୍ୟ ଯେ କେତେଦୂର ଅସଙ୍ଗତ ଏବଂ ଯୁକ୍ତିବିରୁଦ୍ଧ, ତାହା ବୋଲିବା ବାହୁଲ୍ୟ ମାତ୍ର । ଆପଣ-ମାନଙ୍କର ଏ କଥାଟିର ସାର୍ଥକତା କେଉଁଠାରେ ?"

ପ୍ରହ୍ଲାଦ ଏହି କଥା କହି ସେମାନଙ୍କର ଗୌରବ ରକ୍ଷା ନିମିତ୍ତ ମୌନାବଲମ୍ବନ କଲେ; ପୁଣି ହସି ହସି କହିଲେ, "ଅନନ୍ତଙ୍କର ଆଶ୍ରୟ ଗ୍ରହଣ କଲେ କଣ ହେବ ? ଏହା କଣ ଆପଣମାନଙ୍କର ସାଧୁବାଦ୍ୟ ?

ମହାତ୍ମ ସୁରଗଣ ! 'ଅନନ୍ତଙ୍କର ଅଗ୍ରଯ୍ୟର କ ଲାଭ ?' ଆପଣମାନଙ୍କର ଏହି କଥାଟି କଣ ଭଲ ହୋଇଅଛି ? ଯଦି ଆପଣମାନଙ୍କର କୌଣସି କ୍ଲେଶ ନ ହୁଏ, ତେବେ ଅନନ୍ତଙ୍କଠାରୁ କେଉଁ ଫଳ ଲାଭ ହୁଏ ତାହା ନିବେଦନ କରୁଅଛି, ଶୁଶ୍ରୀମା ହେଉନ୍ତୁ—

"ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚାରୋଟି ପୁରୁଷାର୍ଥ ବୋଲି କଥିତ । ଅର୍ଥାତ୍ ଏହି ଚାରୋଟି ଲାଭ କରିବା ସମସ୍ତଙ୍କର ଉଦ୍ଦେଶ୍ୟ । ଯାହାଙ୍କଠାରୁ ଏହି ଚତୁର୍ବର୍ଗ ଲାଭ କରାଯାଏ, ତାହାଙ୍କଠାରୁ କ ଫଳ ଲାଭ ହେବ—ଏମନ୍ତ ବୃଥା 'ବାକ୍ୟ କାହିଁକି ପ୍ରୟୋଗ କରୁଅଛନ୍ତି ? ମରୀଚି ପ୍ରଭୃତି ମହର୍ଷିବୃନ୍ଦ, ପ୍ରଜାପତି, ଦକ୍ଷ ଓ ଅନ୍ୟାନ୍ୟ ମହାତ୍ମାମାନେ ଧର୍ମୋପାର୍ଜନ କରିଅଛନ୍ତି । ଅନ୍ୟାନ୍ୟ ଅନେକେ କେହି ଅର୍ଥ, କେହି ବା କାମ ପ୍ରାପ୍ତ ହୋଇଅଛନ୍ତି । ପୁଣି କୌଣସି କୌଣସି ପୁରୁଷ ତତ୍ତ୍ୱଜ୍ଞାନ ଉପାର୍ଜନ କରି ଜ୍ଞାନ, ଧ୍ୟାନ ଏବଂ ସମାଧି ଦ୍ୱାରା ସଂସାର ବନ୍ଧନରୁ ମୁକ୍ତ ହୋଇ ମୁକ୍ତିଲାଭ କରିଅଛନ୍ତି । ହରି-ଆରାଧନା ସେ ସମସ୍ତ ସମ୍ପଦ, ଐଶ୍ୱର୍ଯ୍ୟ, ମାହାତ୍ମ୍ୟ, ଜ୍ଞାନ, କର୍ମ ଓ ମୁକ୍ତିର ମୂଳ କାରଣ । ହରି-ଆରାଧନା କ ଦୁରୂହ ? ସର୍ବତ୍ର ସମଦୃଷ୍ଟି ଦ୍ୱାରା ତାଙ୍କର ଆରାଧନା ହୋଇଥାଏ । ଯାହାଙ୍କଠାରୁ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ଫଳ ଲାଭ କରାଯାଏ, ସେହି ଅନନ୍ତଙ୍କଠାରୁ କଣ ଲାଭ କରାଯାଇପାରେ—ଆପଣମାନେ ଏଭଳି ଆ କଥା କିପରି କହୁଅଛନ୍ତି ? ଆପଣମାନେ ମୋର ଗୁରୁ । ଅମ୍ଭମାନଙ୍କର ବିବେଚନା ଶକ୍ତି ଅତି ଅଳ୍ପ । ଅତଏବ ଆପଣମାନେ ଭଲ ମନ୍ଦ ବିବେଚନା କରି କଥା କହନ୍ତୁ ।"



## ସପ୍ତମ ଅଧ୍ୟାୟ

## ଅଭିଚାର କ୍ରିୟା ଓ ପୁରୋହିତମାନଙ୍କର ଜୀବନରକ୍ଷା

ପ୍ରହ୍ଲାଦଙ୍କର ଶୁଦ୍ଧ ଜ୍ଞାନପୂର୍ଣ୍ଣ କଥା ମୋହାଚ୍ଛନ୍ନ ପୁରୋହିତମାନେ ବୁଝିବେ କିପରି ? ସେମାନେ ଦୈତ୍ୟରାଜଙ୍କର ଅନୁଗ୍ରହପ୍ରାର୍ଥୀ । ସୁତରାଂ ଯହିଁରେ ତାହାଙ୍କର ଅସନ୍ତୋଷ, ତାହା ପରମ ହିତକାରୀ ହେଲେ ମଧ୍ୟ ସେମାନଙ୍କ ମତରେ ଘୋର ଅନିଷ୍ଟକାରକ ।

ପ୍ରହ୍ଲାଦଙ୍କୁ କୌଣସି ମତେ ସେମାନଙ୍କର ବାଟକୁ ଆଣି ନ ପାରି ପୁରୋହିତମାନେ ତାହାଙ୍କୁ ରୋଷକଷାୟିତ ଚକ୍ଷୁରେ କହିଲେ, " ବାଳକ ! ତୁମ୍ଭେ ଅଗ୍ନିରେ ଦଗ୍ଧ ହେଉଥିଲ । ଆମ୍ଭେମାନେ ତୁମ୍ଭଙ୍କୁ ଏହା ବୋଲି ରକ୍ଷା କରିଥିଲୁଁ ଯେ, ତୁମ୍ଭେ ପୁନର୍ବାର ଏପରି କଥା ମୁହଁକୁ ଆଣିବ ନାହିଁ; କିନ୍ତୁ ମୂର୍ଖତା ଯୋଗେ ତୁମ୍ଭେ ତାହା ବୁଝି ପାରୁ ନାହିଁ । ଦୁର୍ମତେ ! ଯଦି ଆମ୍ଭମାନଙ୍କର କଥା ମାନି ତୁମ୍ଭେ ମୋହକୃତ ଏହି ଦୁଷ୍ଟ ଆଗ୍ରହ ପରିତ୍ୟାଗ ନ କର, ତାହା ହେଲେ ଆମ୍ଭେମାନେ ତୁମ୍ଭର ସଂହାର ନିମିତ୍ତ ଅଭିଚାରକ୍ରିୟା ଅନୁଷ୍ଠାନ କରିବୁଁ ।"

ପୁରୋହିତମାନେ କଣ ଜାଣନ୍ତି ନାହିଁ ଯେ, ବିଷ୍ଣୁ ପ୍ରହ୍ଲାଦଙ୍କର ସର୍ବସ୍ୱ ? କି ଶୟନରେ, କି ସ୍ୱପ୍ନରେ, କି ଜାଗରଣରେ ବିଷ୍ଣୁ ପ୍ରହ୍ଲାଦଙ୍କର ଏକମାତ୍ର ଚିନ୍ତାର ସାମଗ୍ରୀ ? ପୁରୋହିତମାନେ ମୋହାଚ୍ଛନ୍ନ ହୋଇ ଏ କଥା ମଧ୍ୟ ଭୁଲିଗଲେ ଯେ, ପ୍ରହ୍ଲାଦଙ୍କୁ ସଂହାର କରିବା ପାଇଁ ଯେତେଗୁଡ଼ିଏ ଉପାୟ ପ୍ରଯୁକ୍ତ ହେଲଣି, ସେଥିରୁ ଯେ କୌଣସି ଉପାୟର ପ୍ରୟୋଗରେ ପୁରୋହିତମାନେ ପଞ୍ଚତ୍ୱ ପ୍ରାପ୍ତ ହୋଇଥାନ୍ତେ । ସେମାନେ କଣ ଏ କଥା

ମଧ୍ୟ ଭୁଲିଗଲେ ଯେ, ପ୍ରହ୍ଲାଦଙ୍କୁ ଏତେବେଳେଯାଏ ଅସ୍ତ୍ରଶସ୍ତ୍ର, ଅଗ୍ନି, ବିଷ ପ୍ରଭୃତିର ଆକ୍ରମଣରୁ ଯେ ରକ୍ଷା କରିଅଛନ୍ତି, ଅଭିଚାରକ୍ରିୟା କୃତ୍ୟା ତହିଁରୁ ଉତ୍କଟତର କ୍ରିୟାରୁ ସେହି ଏକା ରକ୍ଷା କରିବାକୁ ସମର୍ଥ ? ଯାହା ହେଉ ପୁରୋହିତମାନଙ୍କର ଭୟପ୍ରଦର୍ଶକ ବାକ୍ୟ ଶୁଣି ପରମ ଜ୍ଞାନୀ ପ୍ରହ୍ଲାଦ କହିଲେ, "କୌଣସି ବ୍ୟକ୍ତି କୌଣସି ପ୍ରାଣୀକୁ ବଧ କରି ପାରେ ନାହିଁ । କୌଣସି ପ୍ରାଣୀ କୌଣସି ପ୍ରାଣୀକୁ ରକ୍ଷା କରି ପାରେ ନାହିଁ । ସ୍ୱୟଂ ଆତ୍ମା ସାଧୁ ବା ଅସାଧୁ ବ୍ୟବହାରଦ୍ୱାରା ରକ୍ଷିତ ବା ହତ ହୋଇଥାଏ ।"

ପ୍ରହ୍ଲାଦଙ୍କର ପୂର୍ବୋକ୍ତ କଥା ଶୁଣି ପୁରୋହିତମାନେ ଆପଣାକୁ ଅପମାନିତ ବୋଧ କଲେ ଏବଂ ଅତ୍ୟନ୍ତ କ୍ରୋଧାନ୍ଧ ହୋଇ ପଡ଼ିଲେ । ସେମାନେ ପ୍ରହ୍ଲାଦଙ୍କ ନିମିତ୍ତ ଅଭିଚାରକ୍ରିୟା ଅନୁଷ୍ଠାନରେ ଉଦ୍ୟତ ହେଲେ । ଦେଖୁ ଦେଖୁ ମୂର୍ତ୍ତିମତୀ ଅଭିଚାରକ୍ରିୟା ଉପସ୍ଥିତ ହେଲା । ପ୍ରଚଣ୍ଡ ଅଗ୍ନିଶିଖା-ସମୂହଦ୍ୱାରା ତାହାର ଉଜ୍ଜ୍ୱଳ ଆକୃତି ପରିଦୃଷ୍ଟମାନ ହେବାକୁ ଲାଗିଲା । ତାହାର ପାଦବିକ୍ଷେପରେ ଧରଣୀମଣ୍ଡଳ ବିଚଳିତ ହେଲା । ସେହି ଅତି ଭୀଷଣ ଅଭିଚାରକ୍ରିୟା ଉପସ୍ଥିତ ହୋଇ କୋପାନ୍ୱିତ ହେଲା ଏବଂ ତତ୍କ୍ଷଣାତ୍ ଶୂଳଦ୍ୱାରା ପ୍ରହ୍ଲାଦଙ୍କ ବକ୍ଷସ୍ଥଳରେ ଆଘାତ କଲା । କିନ୍ତୁ କଣ ହେବ ? ସେହି ପ୍ରଦୀପ୍ତ ଶୂଳ ବାଳକ ପ୍ରହ୍ଲାଦର ହୃଦୟରେ ଆହତ ହେବା ମାତ୍ରକେ ଖଣ୍ଡ ଖଣ୍ଡ ହୋଇଗଲା ଏବଂ ଶତଧା ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଭୂତଳରେ ପଡ଼ିଲା । ଭଗବାନ୍ ହରି ସେ ହୃଦୟରେ ଅବସ୍ଥିତି କରୁଅଛନ୍ତି । ସେ ହୃଦୟରେ ଶୂଳର କଥା ତେଣିକି ଥାଉ, ବଜ୍ର ମଧ୍ୟ ଚୂର୍ଣ୍ଣ ହୋଇପାରେ । ପାପାତ୍ମା ଦୈତ୍ୟପୁରୋହିତମାନେ ନିଷ୍ପାପ ପ୍ରହ୍ଲାଦଙ୍କଠାରେ ଅଭିଚାରକ୍ରିୟା ପ୍ରୟୋଗ କରିବାକୁ ଯାଇ ସେହି ଅଭିଚାରକ୍ରିୟାଦ୍ୱାରା ନିଜେ ବିନଷ୍ଟ ହେଲେ । ଅଭିଚାରକ୍ରିୟା ସେମାନଙ୍କୁ ବିନାଶ କରି ଅଚିରମ୍ଭେ ଅନ୍ତର୍ହିତ ହେଲା । ଏଣେ ମହାମତି ପ୍ରହ୍ଲାଦ ପୁରୋହିତମାନଙ୍କ ଅଭିଚାରକ୍ରିୟାଦ୍ୱାରା ଦଗ୍ଧ ହେବାର ଦେଖି ଅସ୍ଥିର ହୋଇ ପଡ଼ିଲେ ।

ତାହାଙ୍କର ପ୍ରାଣ ବିକଳ ହୋଇ ଉଠିଲା । "ହେ କୃଷ୍ଣ ! ହେ ଅନନ୍ତ ! ଏମାନଙ୍କୁ ରକ୍ଷା କର ।" ଏହି କଥା କହି ସେ ପୁରୋହିତମାନଙ୍କ ଆଡ଼କୁ ଦଉଡ଼ିଗଲେ ।

ଅହା ! ଭକ୍ତର ଶତ୍ରୁ ମିତ୍ର ଏ ଜଗତରେ କିଏ ? ପ୍ରାଣୀ ମାତ୍ରକେ ତାହାର ଇଷ୍ଟ ସେମାନଙ୍କର ସତ୍ୟ କିଏ ନାହିଁ । ସେମାନେ କି ଦୁଷ୍ଟ, କି ଶିଷ୍ଟ—ସମସ୍ତଙ୍କୁ ଆପଣାର ବୋଲି ମନେ କରନ୍ତି । ଶିଷ୍ଟମାନେ ଏ କଥା ବୁଝି ପାରନ୍ତି, କିନ୍ତୁ ଦୁଷ୍ଟମାନେ ତାହା ବୁଝିପାରନ୍ତି ନାହିଁ । ଯେଉଁମାନେ ଭକ୍ତକୁ ବିନାଶ କରିବାକୁ ଯାଆନ୍ତି, ଭକ୍ତ ସେମାନଙ୍କୁ ରକ୍ଷା କରିବାକୁ ଯାଏ । ଏହିରୂପ କାର୍ଯ୍ୟ ଭକ୍ତ ଚିହ୍ନିବା ପକ୍ଷରେ କଷ୍ଟିପଥର ସ୍ୱରୂପ । ଅସ୍ମମାନଙ୍କ ପ୍ରହ୍ଲାଦ ଏ କ୍ଷେତ୍ରରେ କଣ କଲେ ଦେଖାଯାଉ । ପ୍ରହ୍ଲାଦ ଅଗ୍ନିରେ ଦହ୍ୟମାନ ପୁରୋହିତମାନଙ୍କୁ ଦେଖି ଜଗତ୍‌ପାଳକ ସେହି ବିଷ୍ଣୁଙ୍କୁ ସମ୍ବୋଧନ କରି ବ୍ୟଥିତ ପ୍ରାଣରେ କହିବାକୁ ଲାଗିଲେ, "ସର୍ବବ୍ୟାପିନ୍ ! ଜଗତ୍‌ସ୍ୱରୂପ ! ଜଗତ୍ ସୃଷ୍ଟିକର୍ତ୍ତା ! ଜନାର୍ଦ୍ଦନ ! ଏହି ବ୍ରାହ୍ମଣମାନଙ୍କୁ ଏହି ଦୁଃସହ ମନ୍ତ୍ରାଗ୍ନିରୁ ରକ୍ଷା କରନ୍ତୁ । ସର୍ବବ୍ୟାପୀ ଜଗଦ୍‌ଗୁରୁ ବିଷ୍ଣୁ ଯଦି ସର୍ବ ଭାବରେ ଥାନ୍ତି, ତାହା ହେଲେ ଏହି ପୁରୋହିତମାନେ ଜୀବିତ ହେଉନ୍ତୁ । ମୁଁ ସର୍ବଭୂତମୟ ବିଷ୍ଣୁଙ୍କଠାରେ ବିଶ୍ୱାସ ସ୍ଥାପନପୂର୍ବକ ଯଦି ଅଗ୍ନିକୁ ମଧ୍ୟ ଶତ୍ରୁ ବୋଲି ମନେ କରି ନ ଥାଏଁ, ତେବେ ଏହି ପୁରୋହିତମାନେ ଜୀବିତ ହେଉନ୍ତୁ । ପୂର୍ବେ ଯେଉଁମାନେ ମୋତେ ବିନାଶ କରିବାକୁ ଆସିଥିଲେ, ଯେଉଁମାନେ ବିଷ ପ୍ରଦାନ କଲେ, ଯେଉଁମାନେ ମୋତେ ଅଗ୍ନିରେ ଦାହ କରିବାକୁ ପ୍ରବୃତ୍ତ ହେଲେ, ଯେ ସମସ୍ତ ଭୁଜଙ୍ଗ ମୋତେ ଦଂଶନ କଲେ, ମୁଁ ସମସ୍ତଙ୍କୁ ମିତ୍ରଭାବରେ ଦର୍ଶନ କରିଅଛି । ସମସ୍ତଙ୍କ ପ୍ରତି ମୋର ସଦ୍‌ବୁଦ୍ଧି ରହିଅଛି । ଏହା ଯଦି ସତ୍ୟ ହୁଏ, ତେବେ ସତ୍ୟାନୁସାରେ ଏହି ଅସୁରଯାଜକମାନେ ପ୍ରାଣ ପ୍ରାପ୍ତ ହେଉନ୍ତୁ ।"

ପ୍ରହ୍ଲାଦ ଏହିପରି ଭାବରେ ବିଷ୍ଣୁଙ୍କ ନିକଟରେ ପ୍ରାର୍ଥନା କରି କିଛିକାଳ ବିଷ୍ଣୁଙ୍କୁ ଧ୍ୟାନ କରିବାକୁ ଲାଗିଲେ। ତତ୍ପରେ ସେହି ଦଗ୍ଧ ପୁରୋହିତମାନଙ୍କୁ ସ୍ପର୍ଶ କରିବା ମାତ୍ରକେ ସେମାନେ ନବ୍ୟମାୟ ହୋଇ ଉଠିଲେ। ସେମାନେ ପ୍ରାଣପ୍ରାପ୍ତ ହୋଇ ଚକ୍ଷୁରୁନ୍ମୀଳନ କରି ଦେଖିଲେ, ପ୍ରହ୍ଲାଦ କଲ୍ୟାଣଭରେ ଉନ୍ମତ୍ତ ହୋଇ ନାହାନ୍ତି। ସେ ପୂର୍ବର ସେହି ବିନୀତ ଭକ୍ତ ପ୍ରହ୍ଲାଦ। ପ୍ରହ୍ଲାଦ ହର୍ଷରେ ଉନ୍ମତ୍ତ ହେବା ତେଣିକି ଥାଉ, ପୁରୋହିତମାନେ ତାହାଙ୍କ ସକାଶେ ଏତେ ଯନ୍ତ୍ରଣା ପାଇଲେ—ଏଥିପାଇଁ ସେ ଅତ୍ୟନ୍ତ ଦୁଃଖିତ। ତାହାଙ୍କୁ ଏହିପରି ମୂହ୍ୟମାନ ବିନମ୍ରାବନତ ଅବସ୍ଥାରେ ଦେଖି ପୁରୋହିତମାନେ ଭକ୍ତର ଗୁଣ ଗାଇବେ, କି ଭଗବାନଙ୍କର ଗୁଣ ଗାଇବେ—ପ୍ରହ୍ଲାଦଙ୍କର ମହିମା ଗାଇବେ, କି ବିଷ୍ଣୁଙ୍କର ମହିମା ଗାଇବେ ତାହା କିଛିହେଲେ ସ୍ଥିର କରି ପାରିଲେ ନାହିଁ। ଭକ୍ତର ଗୌରବରେ ଭଗବାନଙ୍କର ଗୌରବ। ସୁତରାଂ ପୁରୋହିତମାନେ ଗଦ୍‌ଗଦକଣ୍ଠରେ ଆଶୀର୍ବାଣୀ ଉଚ୍ଚାରଣପୂର୍ବକ କହି ଉଠିଲେ, "ବତ୍ସ! ତୁମ୍ଭେ ସର୍ବଶ୍ରେଷ୍ଠ। ତୁମ୍ଭେ ଅପ୍ରତିହତ ବଳବୀର୍ଯ୍ୟସମ୍ପନ୍ନ ଏବଂ ଦୀର୍ଘାୟୁ ହୁଅ। ତୁମ୍ଭେ ଅତୁଳ ଐଶ୍ୱର୍ଯ୍ୟର ଅଧୀଶ୍ୱର ହୋଇ ପୁତ୍ରପୌତ୍ରାଦି ସହିତ ସୁଖରେ କାଳଯାପନ କର।"

ପୁରୋହିତମାନେ ଏହିରୂପେ ପ୍ରହ୍ଲାଦଙ୍କୁ ଆଶୀର୍ବାଦ କରି ଦୈତ୍ୟେଶ୍ୱରଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ତାହାଙ୍କ ନିକଟରେ ସମସ୍ତ ଘଟଣା ବର୍ଣ୍ଣନ କଲେ।



# ଅଷ୍ଟମ ଅଧ୍ୟାୟ

## ପିତାପୁତ୍ର ସମ୍ବାଦ—ସର୍ବବିଜୟୀ କିଏ ?

ଅଭିଶୃରକ୍ରିୟାର ପୂର୍ବବର୍ତ୍ତୀ ସମସ୍ତ ଉପାୟ ବିଫଳ ହୋଇଥିଲା । କିନ୍ତୁ ସେଥିରେ ହିରଣ୍ୟକଶିପୁ ସେତେବେଳେ ବିଚଳିତ ହୋଇ ନ ଥିଲେ । କାରଣ ତାହାଙ୍କର ଶେଷ ଭରସା ଥିଲା ଯେ, ଅନ୍ୟ ସକଳ ଉପାୟ ବ୍ୟର୍ଥ ହୋଇପାରେ, ମାତ୍ର ଅଭିଶୃରକ୍ରିୟାକୁ ବ୍ୟର୍ଥ କରିବା ପାଇଁ ପୃଥିବୀରେ କେହି ଜନ୍ମଗ୍ରହଣ କରି ନାହାନ୍ତି—ତାହା କରିବା କଦାପି ମନୁଷ୍ୟର ଶକ୍ତିସାଧ୍ୟ ନୁହେ । କିନ୍ତୁ ଅଭିଶୃରକ୍ରିୟାର ଏହିଭଳି ପରିଣାମ ଦେଖି ଦୈତ୍ୟରାଜ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ସେ ଜାଣିଲେ ଯେ, ନିଶ୍ଚୟ ପ୍ରହ୍ଲାଦ କୌଣସିଠାରୁ ଅମାନୁଷୀ ଶକ୍ତି ଲାଭ କରିଅଛି— ନୋହିଲେ, ଏତେ ଉପାୟ ବ୍ୟର୍ଥ ହେବା ପରେ ସମ୍ପୂର୍ଣ୍ଣ ଅବ୍ୟର୍ଥ ଉପାୟ ବ୍ୟର୍ଥ ହୁଅନ୍ତା କିପରି ? ସୁତରାଂ ସେ ପୁରୋହିତମାନଙ୍କଠାରୁ ଅଭିଶୃର-କ୍ରିୟାର ସମସ୍ତ ବୃତ୍ତାନ୍ତ ଶୁଣି ପ୍ରହ୍ଲାଦଙ୍କୁ ନିଜ ପାଖକୁ ଡକାଇ ପଠାଇ ପଚାରିଲେ, "ପ୍ରହ୍ଲାଦ ! ତୁମ୍ଭେ ଏପରି ପ୍ରଭାବ କେଉଁଠାରୁ ପାଇଲ ? ତୁମ୍ଭର ପ୍ରଭାବ ଅତ୍ୟନ୍ତ ଚମତ୍କାର । ଅଚ୍ଛା, ତୁମ୍ଭର ଏହି ପ୍ରଭାବ କଣ ତୁମ୍ଭର ଅଧ୍ୟବସାୟପ୍ରସୂତ ? ଅଥବା କୌଣସି ମନ୍ତ୍ରବଳରୁ ହୋଇଅଛି, କିମ୍ବା ତୁମ୍ଭର ଏପରି ପ୍ରଭାବ ସ୍ୱାଭାବିକ ?"

ପ୍ରହ୍ଲାଦ ପିତାଙ୍କର ଏହି ପ୍ରଶ୍ନ ବାକ୍ୟ ଶୁଣି ପିତାଙ୍କ ଚରଣରେ ପ୍ରଣାମ କରି ସାଷ୍ଟାଙ୍ଗପୂର୍ବକ ବିନୀତ ଭାବରେ ନିବେଦନ କଲେ, "ପିତଃ, ମୋର ଏହି ପ୍ରଭାବ ମନ୍ତ୍ରଦ୍ୱାରା ହୋଇ ନାହିଁ, କିନ୍ତୁ ଭଗବାନ ବିଷ୍ଣୁ

ଯେଉଁ ଯେଉଁ ବ୍ୟକ୍ତିର ହୃଦୟରେ ଅବସ୍ଥିତ କରନ୍ତି, ସେ ସମସ୍ତେ ଏହିପରି ପ୍ରଭାବଶାଳୀ । ଯେ ବ୍ୟକ୍ତି କାହାର ଅନିଷ୍ଟ ଚିନ୍ତା କରେ ନାହିଁ ଓ ସେ ସମସ୍ତଙ୍କୁ ଆତ୍ମବତ୍ ମନେ କରିଥାଏ, କୌଣସି କାରଣ ନ ଥିବାରୁ ତାହାର ମଧ୍ୟ ଅନିଷ୍ଟ ହୁଏ ନାହିଁ । ଯେ ବ୍ୟକ୍ତି କର୍ମଦ୍ୱାରା, ମନଦ୍ୱାରା ବା ବାକ୍ୟଦ୍ୱାରା ପରୋପକାରରେ ପ୍ରବୃତ୍ତ ହୁଏ, ତାହାର ସେହି ପରୋପକାର-ରୂପ ବୀଜରୁ ଭୂରି ଭୂରି ଶୁଭଫଳ ଉତ୍ପନ୍ନ ହୋଇଥାଏ । ମୁଁ ମନରେ କାହାର ଅନିଷ୍ଟ ଚିନ୍ତା କରେ ନାହିଁ; କୌଣସି ବ୍ୟକ୍ତିର ଅପକାର କରିବାକୁ ପ୍ରବୃତ୍ତ ହୁଏ ନାହିଁ ଏବଂ ଯହିଁରେ ପରର ଅନିଷ୍ଟ ହେବ, ଏପରି ବାକ୍ୟ ପ୍ରୟୋଗ କରେ ନାହିଁ । ମୁଁ ଏହିସବୁ ପାପରୁ ବିରତ ଥାଇ କେବଳ ସର୍ବଭୂତମୟ ବିଷ୍ଣୁଙ୍କୁ ଆତ୍ମସ୍ୱରୂପେ ଚିନ୍ତା କରିଥାଏଁ । ମୋର ଚିତ୍ତ ସମସ୍ତଙ୍କ କଲ୍ୟାଣସାଧନରେ ଉନ୍ମୁଖ । ଅତଏବ କି ନିମିତ୍ତ ମୋର ଶାରୀରିକ ବା ମାନସିକ, ଆଧିଦୈବିକ ବା ଆଧିଭୌତିକ ଦୁଃଖ ଉପସ୍ଥିତ ହେବ ? ଏହିରୂପେ ଭଗବାନ ବିଷ୍ଣୁଙ୍କୁ ସର୍ବଭୂତମୟ ଜାଣି ସର୍ବଜୀବପ୍ରତି ଅବ୍ୟଭିଚାରିଣୀ ଭକ୍ତି କରିବା ପଣ୍ଡିତମାନଙ୍କର ଅବଶ୍ୟ କର୍ତ୍ତବ୍ୟ ।"



# ନବମ ଅଧ୍ୟାୟ

## ପ୍ରାସାଦରୁ ନିକ୍ଷେପ

ଅସ୍ତ୍ରଶସ୍ତ୍ର, ସର୍ପ, ଦନ୍ତୀ, ଅଗ୍ନି, ବିଷ ଓ ଅଭିଚାରକ୍ରିୟା ପ୍ରଯୁକ୍ତ ହୋଇ ସାରିଲାଣି । ତଥାପି ଦୈତ୍ୟରାଜଙ୍କର ମନ ସନ୍ତୁଷ୍ଟ ହୋଇ ନାହିଁ । ତାହାଙ୍କର ମନ ଯେ ପାଷାଣଠାରୁ କଠିନତର, ଏଥିରେ କି ସନ୍ଦେହ ଥାଇପାରେ ? ପ୍ରହ୍ଲାଦଙ୍କର ଯେଉଁ କଥା ଶୁଣିଥିଲେ ଅନ୍ୟର ଚକ୍ଷୁ ମଧ୍ୟ ଫିଟି ଯାଇଥାନ୍ତା, ଦୈତ୍ୟରାଜ ସେହି ପ୍ରକାର ଲୋକକଲ୍ୟାଣକାରୀ ବୈଷ୍ଣବ କଥା ଶୁଣି ମଧ୍ୟ ସାମାନ୍ୟମାତ୍ର ବିଚଳିତ ହେଲେ ନାହିଁ; ବରଂ ପୁତ୍ରଠାରୁ ବଡ଼ ବଡ଼ କଥାମାନ ଶୁଣିବା ସଙ୍ଗେ ସଙ୍ଗେ ତାହାଙ୍କର କ୍ରୋଧାଗ୍ନି ଉତ୍ତରୋତ୍ତର ପ୍ରଜ୍ୱଳିତ ହେଉଥାଏ । ସେ ଉଚ୍ଚତମ ପ୍ରାସାଦ ଶିଖରରେ ଉପବେଶନ କରି ପୁତ୍ର ମୁଖରୁ ଏହିସବୁ କଥା ଶୁଣିଲେ । କ୍ରୋଧରେ ତାହାଙ୍କ ମୁଖ ଅନ୍ଧକାର ପ୍ରାୟ ହୋଇଗଲା । ସେ କିଙ୍କରମାନଙ୍କୁ ଘନ-ଘୋର ଗର୍ଜନରେ ଆହ୍ୱାନ କରି କହିଲେ, "କିଙ୍କରଗଣ ! ତୁମ୍ଭେମାନେ ଏହି ଅତ୍ୟୁଚ୍ଚ ପ୍ରାସାଦରୁ ଏହି ଦୁରାତ୍ମାକୁ ଏପରି ଭାବରେ ନିକ୍ଷେପ କର ଯେ, ସେ ଯେପରି ପର୍ବତ ଉପରେ ପଡ଼େ ଏବଂ ତାହାର ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗ ଶିଳାଦ୍ୱାରା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ ।" ଦୈତ୍ୟ ଓ ଦାନବମାନେ ଦୈତ୍ୟରାଜଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କଲେ—ପ୍ରହ୍ଲାଦ ସେହି ଶତଯୋଜନ ଉଚ୍ଚ ପ୍ରାସାଦରୁ ନିକ୍ଷିପ୍ତ ହେଲେ । ବାଳକ ପ୍ରହ୍ଲାଦ ହରିଙ୍କୁ ହୃଦୟରେ ଧାରଣ କରି କମ୍ପାନ୍ୱିତମୁଖରେ ପଡ଼ିବାକୁ ଲାଗିଲେ । ସେତେବେଳେ ଜଗଦ୍ଧାତ୍ରୀ ପୃଥିବୀ ଜଗନ୍ନିୟନ୍ତା ହରିଙ୍କ ପରମଭକ୍ତ ପ୍ରହ୍ଲାଦଙ୍କ ପତନ ଦେଖି ଅଗ୍ରସର ହୋଇ ତାହାଙ୍କୁ ଧାରଣ କଲେ ।

ହିରଣ୍ୟକଶିପୁ ଭାବିଲେ—ଏହି ଥର ମୋର ପୁତ୍ରର ଅଙ୍ଗପ୍ରତ୍ୟଙ୍ଗ ପଞ୍ଚଭୂତରେ ମିଶିଗଲା; କିନ୍ତୁ ଟିକିଏ ଓହ୍ଲାଇ ଆସି ଦେଖନ୍ତି—ପ୍ରହ୍ଲାଦଙ୍କ ଶରୀର ଅଭଗ୍ନ ଓ ଅକ୍ଷୁଣ୍ଣ ରହିଅଛି । ରାବଣ ରାମଙ୍କୁ ସଂହାର କରିବାକୁ ଯାଇ ବ୍ୟର୍ଥମନୋରଥ ହୋଇ ଥରେ କହିଥିଲେ, "ମରି ନ ମରଇ ରାମ ଏ କି ଭଳି ବୈରୀ ?" ଦୈତ୍ୟରାଜ ମଧ୍ୟ ସେହିପରି ଭାବିବାକୁ ଲାଗିଲେ, ମୁଁ ଯେତେ ମନେ କରୁଅଛି, ଏ ବାଳକ ନିଶ୍ଚୟ ଏହି ଥର ବିନାଶପ୍ରାପ୍ତ ହେଲା, କିନ୍ତୁ ପୁଣି ଦେଖେଁ, ତାହାର ଟିକିଏ ମାତ୍ର ଅନିଷ୍ଟ ହୋଇ ନାହିଁ—ସେ ଯେପରି ଥିଲା, ସେହିପରି ଅଛି । ଏ କି ମାୟା । ଏ କି କୁହୁକ । ଦେଖାଯାଉ, ଏ ବାଳକ ଯଦି କୌଣସି ମାୟାବୀର ବୁଦ୍ଧିରେ ଶିକ୍ଷିତ ହୋଇ ଏହିପରି ରକ୍ଷା ପାଉଥାଏ । ମୁଁ ମଧ୍ୟ ଏହିଥର ଜଣେ ମାୟାବୀ ନିଯୁକ୍ତ କରି ତାହାର ସମସ୍ତ କୁହୁକ ଶେଷ କରିବି ।"



## ଦଶମ ଅଧ୍ୟାୟ

## ଶମ୍ବରର ମାୟାବଳ ପ୍ରୟୋଗ

ଅସ୍ତ୍ର, ଶସ୍ତ୍ର, ସର୍ପ, ଦନ୍ତୀ, ଅଗ୍ନି, ବିଷ, ଅଭିଚାର କିମ୍ବା, ପ୍ରାସାଦରୁ ନିକ୍ଷେପ ପ୍ରଭୃତି ଗୋଟିକ ପରେ ଗୋଟିଏ ଦୈତ୍ୟରାଜଙ୍କର ଦୁଷ୍ଟବିଧାନ କରି ପାରି ନାହାନ୍ତି । ପ୍ରହ୍ଲାଦ ବୋଧହୁଏ କୌଣସି ମାୟାବୀଦ୍ୱାରା ରକ୍ଷିତ, ଏହି ସନ୍ଦେହରେ ଦୈତ୍ୟେଶ୍ୱର ଶମ୍ବର ନାମକ ଜଣେକ ମାୟାବୀକୁ ଡକାଇ କହିଲେ, "ଶମ୍ବର, ମୁଁ ଏହି ଦୁର୍ବୁଦ୍ଧି ବାଳକକୁ ବିନାଶ କରି ପାରିଲି ନାହିଁ । ତୁମ୍ଭେ ମାୟାବୀ, ଅତଏବ ଏହାକୁ ମାୟା ଦ୍ୱାରା ବିନାଶ କର ।" ଶମ୍ବର ତତ୍କ୍ଷଣାତ୍ ଆପଣାର ଗୌରବ ଦେଖାଇ କହିଲା, "ଦାନବରାଜ ! ମୁଁ ଏହିକ୍ଷଣି ଏ ବାଳକକୁ ବିନାଶ କରୁଅଛି । ଆପଣ ମୋର ମାୟାବଳ ପ୍ରତ୍ୟକ୍ଷ କରନ୍ତୁ । ମୁଁ ଶତସହସ୍ର କୋଟି ପ୍ରକାର ମାୟା ଜାଣେ ।" ଏହିଥର ଶାମ୍ବରୀ ମାୟା ପ୍ରଯୁକ୍ତ ହେବ; କିନ୍ତୁ ଶମ୍ବରର ଏହି ଆସ୍ଫାଳନ ବାକ୍ୟ ଶୁଣି କିଏ ହାସ୍ୟ ସମ୍ବରଣ କରିବ ? ଏତେ ଉପାୟ ବିଫଳ ହେବା ପରେ ଶମ୍ବରକୁ ଏ କାର୍ଯ୍ୟରେ ସାହସୀ ଦେଖି କିଏ ମନେ ନ କରିବ—"ବଡ଼ ବଡ଼ ଗଲେ ଫସରଫାଟି; ସାନ ଅସିଲେ ବେସର ବାଟି ?" ଦେଖାଯାଉ ସମ୍ବରର ମାୟାର କରାମତି କେତେ ?

ଦୁର୍ବୁଦ୍ଧି ଶମ୍ବରାସୁର ଦୈତ୍ୟରାଜଙ୍କୁ ସାନ୍ତ୍ୱନା ଦେଇ ସର୍ବତ୍ର ସମଦର୍ଶୀ ପ୍ରହ୍ଲାଦଙ୍କୁ ବିନାଶ କରିବାପାଇଁ ମାୟାଜାଲ ବିସ୍ତାର କରିବାକୁ ଲାଗିଲା । ଏଣେ ପ୍ରହ୍ଲାଦ ଶମ୍ବରାସୁର ପ୍ରତି ତିଳେମାତ୍ର ମାତ୍ସର୍ଯ୍ୟ ପ୍ରକାଶ ନ କରି ସମାହିତ ଚିତ୍ତରେ ହରିଙ୍କୁ ସ୍ମରଣ କରିବାକୁ ଲାଗିଲେ । ତେଣେ ଭଗବାନ୍ ଚକ୍ରପାଣି ପ୍ରହ୍ଲାଦଙ୍କୁ ରକ୍ଷା କରିବାପାଇଁ କରାଳ ସୁଦର୍ଶନ

ଚକ୍ରକୁ ଆଦେଶ କରିବାମାତ୍ରକେ ସୁଦର୍ଶନ ପ୍ରହ୍ଲାଦଙ୍କ ନିକଟକୁ ଆଗମନ କଲା । ସେହି ଶୀଘ୍ରଗାମୀ ଚକ୍ର ସେହି ବାଳକର ଦେହ ରକ୍ଷା କରିବା ପାଇଁ ଶମ୍ବରାସୁରର ସହସ୍ର ମାୟା ଏକାଦିକ୍ରମେ ବିନଷ୍ଟ କଲା । ଅତଃପର ଦୈତ୍ୟରାଜ ହିରଣ୍ୟକଶିପୁ ସଂଶୋଷକ ସମୀରଣକୁ କହିଲେ, "ତୁମ୍ଭେ ଅବିଳମ୍ବେ ମୋର ନିର୍ଦ୍ଦେଶରେ ଏହି ଦୁରାତ୍ମାକୁ କ୍ଷୟ କର ।" ସେତେ-ବେଳେ ଶୀତ ରୁକ୍ଷ ନିତାନ୍ତ ଦୁଃସହ ବାୟୁ "ଯଥାଜ୍ଞା ମହାରାଜ ।" ଏହି କଥା କହି ପ୍ରହ୍ଲାଦଙ୍କ ଦେହ ଶୋଷଣ ନିମିତ୍ତ ଶୀଘ୍ର ତାହାଙ୍କ ଦେହରେ ପ୍ରବେଶ କଲା । ନିଜ ଦେହରେ ସଂଶୋଷକ ବାୟୁ ପ୍ରବେଶ କରିଅଛି ବୁଝିପାରି ପ୍ରହ୍ଲାଦ ପବନାଶନ ଶେଷମୂର୍ତ୍ତି ଭଗବାନଙ୍କୁ ସ୍ମରଣ କରିବାକୁ ଲାଗିଲେ । ସେତେବେଳେ ଅନନ୍ତ ଅତ୍ୟନ୍ତ ରାଗାନ୍ୱିତ ହୋଇ ପ୍ରହ୍ଲାଦଙ୍କ ହୃଦୟରେ ପ୍ରବେଶ କରି ସେହି ଭୀଷଣ ବାୟୁକୁ ପାନ କରିବାକୁ ଲାଗିଲେ । ସଂଶୋଷକ ବାୟୁ କ୍ଷୟପ୍ରାପ୍ତ ହେଲା । ଏହିରୂପେ ଶାମ୍ବରୀ ମାୟା ଓ ସଂଶୋଷକ ବାୟୁ କେହି ପ୍ରହ୍ଲାଦଙ୍କୁ ବିନାଶ କରି ପାରିଲେ ନାହିଁ । ଅସୁରରାଜଙ୍କ ଭାବନାର ଆଉ ଅନ୍ତ ରହିଲା ନାହିଁ । ସେ କେବଳ ଏକମନରେ ଏକପ୍ରାଣରେ ଭାବିବାକୁ ଲାଗିଲେ—"ମୋର ଜ୍ଞାତ ସମସ୍ତ ଉପାୟ ବ୍ୟର୍ଥ ହେଲା । ବାଳକର ବିନାଶରେ ବସ୍ତୁ ମହିମାର ବିନାଶ । ଆଉ କି ଉପାୟ କରିବି ?"



# ଏକାଦଶ ଅଧ୍ୟାୟ

---

## ଗୁରୁଗୃହରେ ନୀତିଶିକ୍ଷା—ପ୍ରକୃତ ଭାଗ୍ୟବାନ କିଏ ?

ଶମ୍ବରାସୁରର ମାୟା ବିଫଳ ହେଲା । ବାୟୁ ମଧ୍ୟ କ୍ଷୟପ୍ରାପ୍ତ ହେଲା । ଦୈତ୍ୟରାଜ ଅନନ୍ୟୋପାୟ ହୋଇ ପ୍ରହ୍ଲାଦଙ୍କୁ ପୁନର୍ବାର ଗୁରୁଗୃହକୁ ପଠାଇବାପାଇଁ ମନସ୍ଥ କଲେ । ତାହାଙ୍କର ଆଶା ଏହି ଯେ, ତାଙ୍କ ମତର ଅନୁକୂଳ ଗୁରୁ ନିକଟରେ ରହି ଯଦି ପ୍ରହ୍ଲାଦର ମନ ପରିବର୍ତ୍ତିତ ହୋଇପାରେ । କାରଣ ଦୈତ୍ୟରାଜଙ୍କୁ ଯେତେ ଯେତେ ମାରଣ କୌଶଳ-ମାନ ଜଣାଥିଲା, ପୁତ୍ରବିନାଶ ନିମିତ୍ତ ସମସ୍ତ ପରୀକ୍ଷା କରି ସାରିଲେଣି । ବର୍ତ୍ତମାନ ପ୍ରହ୍ଲାଦ ଗୁରୁଗୃହରେ ଥାଇ, ଦୈତ୍ୟରାଜ ମଧ୍ୟ ପୁତ୍ରବିନାଶର ନବ ନବ ଯନ୍ତ୍ର ଅବିଷ୍କାର କରୁଥାନ୍ତି । ଏହି ସମୟରେ ପ୍ରହ୍ଲାଦର ମାନସିକ ପରିବର୍ତ୍ତନ ହେଲେ ତ ସୁଖର କଥା; ନଚେତ୍, ପୁନର୍ବାର ତାହାଙ୍କ ପ୍ରତି ନବାବିଷ୍କୃତ ବିନାଶମନ୍ତ୍ର ପ୍ରୟୋଗ କରିବାକୁ ହେବ । ଯାହାହେଉ ଦୈତ୍ୟରାଜଙ୍କ ଇଚ୍ଛାକ୍ରମେ ମହାମତି ପ୍ରହ୍ଲାଦ ଗୁରୁଗୃହକୁ ଗମନ କଲେ । ଗୁରୁ ପ୍ରତିଦିନ ସେହି ବାଳକକୁ ରାଜ୍ୟଫଳପ୍ରଦ ନୀତିଶାସ୍ତ୍ର ବିଷୟରେ ଶିକ୍ଷା ଦେବାକୁ ଲାଗିଲେ । ସେ ଯେତେବେଳେ ବୁଝିଲେ ଯେ, ପ୍ରହ୍ଲାଦ ନୀତିଶାସ୍ତ୍ରରେ ଶିକ୍ଷିତ ଓ ବିନୀତ ହୋଇଅଛନ୍ତି, ସେତେବେଳେ ସେ ଦାନବରାଜ ହିରଣ୍ୟକଶିପୁଙ୍କ ସମୀପକୁ ଯାଇଁ ଆପଣାର କୃତକାର୍ଯ୍ୟତା ବିଷୟରେ ନିବେଦନ କରିବାକୁ ଲାଗିଲେ ।

ଆଚାର୍ଯ୍ୟ ସାନନ୍ଦଚିତ୍ତରେ ଦାନବରାଜଙ୍କୁ କହିଲେ, "ଦୈତ୍ୟପତେ ! ଆପଣଙ୍କ ପୁତ୍ର ପ୍ରହ୍ଲାଦଙ୍କୁ ମୁଁ ନୀତିବିଦ୍ୟା ଶିଖାଇଅଛି । ଶୁକ୍ରାଚାର୍ଯ୍ୟ ଯେ ନୀତି-ଉପଦେଶ କରିଅଛନ୍ତି, ପ୍ରହ୍ଲାଦ ତାହା ସୁନ୍ଦରରୂପେ ଅବଗତ କରି-

ଅଛନ୍ତି ।” ଏହି କଥା ଶୁଣି ଦୈତ୍ୟରାଜ ହିରଣ୍ୟକଶିପୁ ଅଶ୍ୱସ୍ତ ହୋଇ ପୁଣି ନୀତିବିଦ୍ୟାନୈପୁଣ୍ୟ ବିଷୟରେ ପ୍ରଶ୍ନ କରି କହିଲେ, “ପ୍ରହ୍ଲାଦ ! ରାଜା ଶତ୍ରୁ ଓ ମିତ୍ର ଏହି ଉଭୟଙ୍କ ପ୍ରତି କିପରି ବ୍ୟବହାର କରିବେ ? ଷଡ଼ୟନ୍ତ୍ର ଓ ଏହି ଉଭୟର ସାମ୍ୟାବସ୍ଥାରେ କିପରି ଆଚରଣ କରିବା କର୍ତ୍ତବ୍ୟ ? ମନ୍ତ୍ରୀ, ଅମାତ୍ୟ, ବାହ୍ୟ ବା ଅଭ୍ୟନ୍ତର ଚର, ଶଙ୍କିତ, ଅଶଙ୍କିତ ଓ ସ୍ୱୈର—ଏମାନଙ୍କ ପ୍ରତି କିପରି ବ୍ୟବହାର କରିବ ? ସନ୍ଧିବିଗ୍ରହାଦି ସ୍ଥଳରେ କେଉଁଠାରେ କିପରି କାର୍ଯ୍ୟ କରିବା କର୍ତ୍ତବ୍ୟ, କେଉଁଠାରେ କିପରି ରହିବା ଅକର୍ତ୍ତବ୍ୟ ଏବଂ ପର୍ବତାଦିର ଦୁର୍ଗବା ଜଳଦୁର୍ଗ କିରୂପେ ଭେଦ କରିବାକୁ ହେବ ? ଅବଶ୍ୟ ବଶୀ ପୁଳିନ୍ଦ ମ୍ଳେଚ୍ଛ ପ୍ରଭୃତି ଅସଭ୍ୟ ଜାତିମାନଙ୍କୁ ବଶୀଭୂତ କରିବାକୁ ହେଲେ ଏବଂ ଗୂଢ଼ ଶତ୍ରୁମାନଙ୍କୁ ନିରାଶ କରିବାକୁ କିପରି ବ୍ୟବହାର କରିବାକୁ ହେବ ? ଏହି ସମସ୍ତ ଏବଂ ଅନ୍ୟାନ୍ୟ ଯାହା କିଛି ନୀତି ତୁମ୍ଭେ ଅଧ୍ୟୟନ କରିଅଛ, ସେ ସମସ୍ତ କହ । ତୁମର ମନୋଗତ ଭାବ ଜାଣିବା ପାଇଁ ମୋର ଇଚ୍ଛା ହେଉଅଛି ।”

ପ୍ରହ୍ଲାଦ ପିତାଙ୍କର ପ୍ରଶ୍ନମାନ ଶୁଣି ବିନୟାବନତ ହୋଇ ତାହାଙ୍କ ଚରଣରେ ପ୍ରଣିପାତପୂର୍ବକ କୃତାଞ୍ଜଳିପୁଟରେ ଦଣ୍ଡାୟମାନ ହୋଇ କହିଲେ, “ପିତଃ ! ଆପଣ ଯେ ସମସ୍ତ ବିଷୟ ମୋତେ ପ୍ରଶ୍ନ କଲେ, ଗୁରୁଦେବ ସେ ସମସ୍ତ ବିଷୟରେ ମୋତେ ଶିକ୍ଷା ଦେଇଅଛନ୍ତି । ମୁଁ ମଧ୍ୟ ତାହା ଶିକ୍ଷା କରିଅଛି । କିନ୍ତୁ ମୋ ମତରେ ସେ ନୀତି ସାଧୁ ବୋଲି ବୋଧ ହେଉ ନାହିଁ । ଶତ୍ରୁମିତ୍ରମାନଙ୍କର ବଶୀକରଣ ବିଷୟରେ ସାମ, ଦାନ, ଭେଦ, ଦଣ୍ଡ ପ୍ରଭୃତି ଉପାୟଚତୁଷ୍ଟୟ ଉପଦିଷ୍ଟ ହୋଇଅଛି; କିନ୍ତୁ ପିତଃ, ଆପଣ କ୍ରୋଧ କରିବେ ନାହିଁ, ମୁଁ ସେପରି ଶତ୍ରୁ ମିତ୍ର ଦେଖୁ ନାହିଁ । ମହାବାହୋ ! ଯେଉଁଠାରେ ସାଧ୍ୟର ଅଭାବ, ସେଠାରେ ସାଧନର ପ୍ରୟୋଜନ କଣ ? ଯେତେବେଳେ ଜଗନ୍ନାଥ ଜଗନ୍ମୟ, ସର୍ବଭୂତାତ୍ମା—

ପରମାତ୍ମା ଗୋବିନ୍ଦ ସର୍ବଭୂତର ଅନ୍ତରାତ୍ମାରେ ଅବସ୍ଥାନ କରୁଅଛନ୍ତି, ସେତେବେଳେ ମିତ୍ର ଓ ଅମିତ୍ରର କଥା କେଉଁଠାରେ ? ସମସ୍ତ ପ୍ରାଣୀ ତ ସମାନ । ଯେତେବେଳେ ଭଗବାନ୍ ବିଷ୍ଣୁ ଆପଣଙ୍କ ଠାରେ, ମୋଠାରେ ଏବଂ ଅନ୍ୟ ସର୍ବତ୍ର ବିଦ୍ୟମାନ, ସେତେବେଳେ ଏ ମୋର ମିତ୍ର—ସେ ମୋର ଶତ୍ରୁ, ଏପ୍ରକାର ସ୍ୱତନ୍ତ୍ର ବ୍ୟବସ୍ଥା କିରୂପେ ସଙ୍ଗତ ହେବ ? ଯେଉଁ ନୀତିଶାସ୍ତ୍ରରେ ରାଗଦ୍ୱେଷାଦିମୂଳକ କଥାମାନ ରହିଅଛି, ସେପରି ନୀତିଶାସ୍ତ୍ରରେ କି ପ୍ରୟୋଜନ ? ବରଂ ନିଷ୍କାମ ହୋଇ ଆତ୍ମତତ୍ତ୍ୱରେ ଯତ୍ନ କରିବା ବିଧେୟ । ହେ ଅସୁରେଶ୍ୱର । ମୋହବଶତଃ ଅବିଦ୍ୟାରେ ବିଦ୍ୟାବୋଧ ଉତ୍ପନ୍ନ ହୋଇଥାଏ । ଦେଖନ୍ତୁ, ବାଳକ କି ଖଦ୍ୟୋତକୁ ଅଗ୍ନି ବୋଲି ମନେ କରେ ନାହିଁ ? ଯାହାଦ୍ୱାରା ସଂସାର ବନ୍ଧନର ମୋଚନ ହୁଏ, ତାହା କର୍ମ ଏବଂ ଯଦ୍ଦ୍ୱାରା ମୁକ୍ତିଲାଭ ହୁଏ, ତାହା ବିଦ୍ୟା (ସା ବିଦ୍ୟା ଯା ବିମୁକ୍ତୟେ) । ଅର୍ଥୋପାଦନର ସାଧକ ଅନ୍ୟ କର୍ମ କେବଳ ଆୟାସ ଜନିତ ବିହିତ ହୋଇଅଛି । ଏବଂ ଅନ୍ୟ ବିଦ୍ୟା ଐନ୍ଦ୍ରଜାଲିକାଦି ଶିଳ୍ପବିଦ୍ୟା ପରି କେବଳ କୌଶଳରେ ପର୍ଯ୍ୟବସିତ ହେଉଅଛି । ଅତଏବ, ରାଜ୍ୟାଦି ସାଧକ କାର୍ଯ୍ୟକୁ ଅତ୍ୟନ୍ତ ତୁଚ୍ଛ ଜ୍ଞାନ କରି ଯାହା ସାର, ତାହା ଆପଣଙ୍କ ନିକଟରେ ବର୍ତ୍ତମାନ ନିବେଦନ କରୁଅଛି—

"ଦେଖନ୍ତୁ, କେଉଁ ବ୍ୟକ୍ତି ରାଜ୍ୟ ଓ ଧନ ଲାଭର ଅଭିଳାଷୀ ନୁହେ ? କିନ୍ତୁ ଏହି ରାଜ୍ୟ ଓ ଧନ ଉଭୟେ ଜନ୍ମାନ୍ତରୀଣ ପୁଣ୍ୟ ଦ୍ୱାରା ଲଭ୍ୟ । ସୁତରାଂ ପୁଣ୍ୟବାନ୍ ପୁରୁଷମାନେ ଏହା ପ୍ରାପ୍ତ ହୋଇଥାନ୍ତି । ମହାଭାଗ । ସମ୍ପଦ ପ୍ରତି ବା ମହତ୍ତ୍ୱଲାଭ ପ୍ରତି ସମସ୍ତଙ୍କୁ ଯତ୍ନଶୀଳ ଦେଖାଯାଏ; କିନ୍ତୁ ଉଦ୍ୟୋଗ ସେହି ସମ୍ପଦାଦି ଲାଭର କାରଣ ନୁହେ—ପୁରୁଷର ଭାଗ୍ୟ ତାହା ପ୍ରଦାନ କରିଥାଏ । ପ୍ରଭୁ । ଦେଖନ୍ତୁ, ଯେଉଁମାନେ ନିତାନ୍ତ ଜଡ, ବିବେକଶୂନ୍ୟ, ଦୁର୍ବଳ ଓ ରାଜନୀତି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ,

ସେମାନେ ସୁଦ୍ଧା ଭାଗ୍ୟବଳରେ ସମ୍ପଦ ଲାଭ କରନ୍ତି । ଅତଏବ ଯେ ମହତ୍ତ୍ୱ କାମନା କରନ୍ତି, ତାହାଙ୍କୁ ପୁଣ୍ୟ ଉପାର୍ଜ୍ଜନରେ ଯତ୍ନବାନ୍ ହେବାକୁ ହେବ । ଯେ ମୁକ୍ତି ପ୍ରାର୍ଥନା କରନ୍ତି, ତାହାଙ୍କର ସର୍ବତ୍ର ସମଦୃଷ୍ଟି ରଖିବା କର୍ତ୍ତବ୍ୟ । ଦେବତା, ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ ଓ ସରୀସୃପ—ଏମାନେ ଅନନ୍ତଦେବଙ୍କ ସ୍ୱରୂପ; କେବଳ ସ୍ୱତନ୍ତ୍ରଭାବରେ ଅବସ୍ଥିତ କରୁଅଛନ୍ତି । ଯେ ଏହି ସମୁଦାୟ ରହସ୍ୟ ଜାଣିଅଛନ୍ତି, ସେ ସ୍ଥାବରଜଙ୍ଗମାତ୍ମକ ବିଶ୍ୱକୁ ଅତ୍ମବତ୍ ଦେଖନ୍ତି । କାରଣ, ବିଷ୍ଣୁ ବିଶ୍ୱରୂପ ଧାରଣ କରି ରହି ଅଛନ୍ତି । ମନୁଷ୍ୟର ଏହିପରି ବୁଦ୍ଧି ଉପସ୍ଥିତ ହେଲେ ଅନାଦି ଭଗବାନ୍ ଈଶ୍ୱର ତାହା ପ୍ରତି ପ୍ରସନ୍ନ ହୁଅନ୍ତି ଏବଂ ସେ ପ୍ରସନ୍ନ ହେଲେ ସମୁଦାୟ କ୍ଳେଶ ଦୂର ହୁଏ ।"

ହିରଣ୍ୟକଶିପୁ ପ୍ରହ୍ଲାଦଙ୍କ ମୁହଁରୁ ଏହିପରି ବାକ୍ୟ ଶ୍ରବଣକରି କୋଧ-ଜର୍ଜ୍ଜରିତ ହେଲେ । ସେ ସିଂହାସନରୁ ତତ୍‌କ୍ଷଣାତ୍ ଗାତ୍ରୋତ୍ଥାନ କରି ମହା-କୋଧରେ ପରମ ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କ ବକ୍ଷସ୍ଥଳରେ ପଦାଘାତ କଲେ । ସେ କୋପାନଳରେ ପ୍ରଜ୍ୱଳିତ ଏବଂ ନିତାନ୍ତ ଅସହିଷ୍ଣୁ ହୋଇ ପଡ଼ିଲେ, ସତେ ଯେପରି ସମସ୍ତ ସଂସାର ସଂହାର କରିବାର ବାସନାରେ ସେ ହସ୍ତଦ୍ୱାରା ହସ୍ତ ନିକ୍ଷେପଣ କରିବାକୁ ଲାଗିଲେ ।



# ଦ୍ୱାଦଶ ଅଧ୍ୟାୟ

## ନାଗପାଶବନ୍ଧନ ଓ ସମୁଦ୍ରରେ ନିକ୍ଷେପ

ପ୍ରହ୍ଲାଦଙ୍କ ମୁଖରୁ ବିଷ୍ଣୁଙ୍କର ସର୍ବବ୍ୟାପିତ୍ୱ ପ୍ରଭୃତି ଗୁଣଗ୍ରାମ ଶ୍ରବଣ କରି ହିରଣ୍ୟକଶିପୁ ଅସ୍ଥିର ହୋଇ ପଡ଼ିଲେ । ସେ ପ୍ରହ୍ଲାଦଙ୍କୁ ନାନା ନିର୍ଯ୍ୟାତନ ଓ ଗୁରୁଗୃହରେ ବିବିଧ ଶିକ୍ଷା ଦେଲେ ମଧ୍ୟ ପ୍ରହ୍ଲାଦ ଉତ୍ତରୋତ୍ତର ବିଷ୍ଣୁଙ୍କ ଆଡ଼କୁ ଅଗ୍ରସର ହେଉଅଛି, ଏହି ଭାବନା ତାହାଙ୍କ ହୃଦୟକୁ ବିଦ୍ଧ କରିବାକୁ ଲାଗିଲା । ସେ ଅଧୀର ହୋଇ କହିଲେ, "ଅହେ ବିପ୍ରଚିତ୍ତେ ! ଅହେ ରାହୋ ! ଅହେ ବଳ ! ତୁମ୍ଭେମାନେ ଏହି ବାଳକକୁ ନାଗପାଶରେ ବନ୍ଧନ କରି ସମୁଦ୍ରରେ ନିକ୍ଷେପ କର; ଆଉ ବିଳମ୍ବ କର ନାହିଁ । ଏହା ନ କଲେ ସମୁଦାୟ ଦୈତ୍ୟ ଓ ଦାନବମାନେ ଏହି ଦୁରାତ୍ମା ମୂଢ଼ର ମତାବଲମ୍ବୀ ହେବେ । ଆମ୍ଭେମାନେ ଓ ଅନ୍ୟାନ୍ୟ ଲୋକେ ବାରମ୍ବାର ନିବାରଣ କରିଅଛୁଁ, ତଥାପି ଏହି ପାପାତ୍ମା ବିଷ୍ଣୁର ସ୍ତବ କରୁଅଛି । ଅତଏବ ଦୁଷ୍ଟ ଲୋକର ବିନାଶ ମଙ୍ଗଳଜନକ ।"

ଅସ୍ତ୍ର ଶସ୍ତ୍ର, ସର୍ପ, ହସ୍ତୀ, ଅଗ୍ନି, ବିଷ, ଅଭିଚାରକ୍ରିୟା, ପ୍ରାସାଦରୁ ନିକ୍ଷେପ, ମାୟାବଳ ପ୍ରଭୃତି ଗୋଟିକ ପରେ ଗୋଟିଏ ଉପାୟ ବ୍ୟର୍ଥ ହୋଇଅଛି । ଏପର୍ଯ୍ୟନ୍ତ ପ୍ରହ୍ଲାଦ ଅକ୍ଷତ ଶରୀର ଓ ମନରେ ବିଦ୍ୟମାନ । ବର୍ତ୍ତମାନ ନାଗପାଶବନ୍ଧନରୂପ ନୂତନ ବିନାଶୋପାୟର ଆଶ୍ରୟ ଲାଭ କରି ଦୈତ୍ୟେଶ୍ୱର କଣ ସଫଳମନୋରଥ ହେବେ ? ଦେଖାଯାଉ, ବିପଦବାରଣ ଶ୍ରୀମଧୁସୂଦନଙ୍କର କି ବିଧାନ । ଦୈତ୍ୟମାନେ ହିରଣ୍ୟ-କଶିପୁଙ୍କର ଆଦେଶ ଶୁଣିବାମାତ୍ରକେ ପ୍ରହ୍ଲାଦଙ୍କୁ ନାଗପାଶରେ ବନ୍ଧନ କରି

ସାଗରଜଳରେ ନିକ୍ଷେପ କଲେ । ପ୍ରହ୍ଲାଦ ସମୁଦ୍ରରେ ପଡ଼ିବାମାତ୍ରକେ ମହାସାଗର ଚତୁର୍ଦ୍ଦିଗରେ କ୍ଷୁବ୍ଧ ଏବଂ ଉଦ୍ବେଳ ହୋଇ ଉଠିଲା । ହିରଣ୍ୟକଶିପୁ ସାଗରଜଳଦ୍ୱାରା ଭୂଲୋକ ପ୍ଳାବିତ ପ୍ରାୟ ଦେଖି ଦୈତ୍ୟମାନଙ୍କୁ କେତେ ଉପଦେଶ ଦେବାକୁ ଲାଗିଲେ ।

ଦୈତ୍ୟରାଜ ଦୈତ୍ୟମାନଙ୍କୁ ସମ୍ବୋଧନ କରି କହିଲେ, "ହେ ଦୈତ୍ୟବୃନ୍ଦ, ତୁମ୍ଭେମାନେ ଏହି ସମୁଦ୍ରଗର୍ଭରେ ଏହି ଦୁର୍ମତିକୁ ପର୍ବତଦ୍ୱାରା ଦୃଢ଼ରୂପେ ଆଚ୍ଛାଦନ କର । ଅଗ୍ନି ଏହାକୁ ଦଗ୍ଧ କରି ପାରେ ନାହିଁ । ଅସ୍ତ୍ର ଶସ୍ତ୍ର ଏହାକୁ ଛେଦ କରିବାକୁ ସମର୍ଥ ହୋଇ ନାହିଁ । ଉରଗମାନେ ଏହାକୁ ବିନାଶ କରି ପାରି ନାହାନ୍ତି । ତୀକ୍ଷ୍ଣ ବିଷ ଓ ଅଭିଚାରକ୍ରିୟା ବ୍ୟର୍ଥ ହୋଇଅଛି । ଶମ୍ବରାସୁରର ମାୟା ମଧ୍ୟ ଏହା ନିକଟରେ ପରାସ୍ତ ହୋଇଅଛି । ଉଚ୍ଚ ପର୍ବତଶିଖରୁ ଏହାକୁ ନିକ୍ଷେପ କଲୁ, ତହିଁରେ ମଧ୍ୟ ଏହାର କିଛିମାତ୍ର ଅନିଷ୍ଟ ହେଲା ନାହିଁ । ଏହି ବାଳକ ଅତି ଦୁଷ୍ଟସ୍ୱଭାବ । ଏହାର ଜୀବନ ବିଫଳ । ଅତଏବ ଏହି ଦୁର୍ମତି ବର୍ତ୍ତମାନ ଏହି ସମୁଦ୍ରରେ ପର୍ବତସମୂହଦ୍ୱାରା ଆକ୍ରାନ୍ତ ହୋଇ ଅବସ୍ଥାନ କରୁ । ଏହିପରି ହେଲେ ଅନ୍ତତଃ ସହସ୍ର ବର୍ଷ ପରେ ମଧ୍ୟ ପ୍ରାଣତ୍ୟାଗ କରିବ ।"

ଦୈତ୍ୟରାଜଙ୍କର ପୂର୍ବୋକ୍ତ କଥାମାନ ଶୁଣି ଦୈତ୍ୟ ଓ ଦାନବମାନେ ସମୁଦ୍ର ମଧ୍ୟରେ ପ୍ରହ୍ଲାଦକୁ ପର୍ବତଦ୍ୱାରା ଆକ୍ରମଣ କଲେ । ସେମାନେ ପର୍ବତସମୂହଦ୍ୱାରା ସହସ୍ର ଯୋଜନ ଆଚ୍ଛାଦନ କରି ରଖିଲେ । ପ୍ରହ୍ଲାଦ ବର୍ତ୍ତମାନ କଣ କରୁଛନ୍ତି ? ବିଷ୍ଣୁଭକ୍ତ ପ୍ରହ୍ଲାଦ କଣ ଅଣନିଶ୍ୱାସୀ ହୋଇ ପ୍ରାଣତ୍ୟାଗ କରିବେ ? ବିଷ୍ଣୁଙ୍କ ନାମରେ କଣ କଳଙ୍କ ଲାଗିବ ? ନା,ନା, ମହାମତି ପ୍ରହ୍ଲାଦ ସମୁଦ୍ରଗର୍ଭରେ ପର୍ବତମାନଙ୍କଦ୍ୱାରା ଆଚ୍ଛାଦିତ ହୋଇ ପୂଜା କର୍ତ୍ତବ୍ୟ ପାସୋରି ନାହାନ୍ତି । ସେ ଆହ୍ନିକ ବେଳାରେ ଏକାଗ୍ରଚିତ୍ତ

ହୋଇ ବିଷ୍ଣୁଙ୍କ ସ୍ତବରେ ମତ୍ତ । ଏହିପରି ଧୈର୍ଯ୍ୟ, ଭକ୍ତି ଓ ବିଶ୍ୱାସ ନ ଥିଲେ ପ୍ରହ୍ଲାଦ ନାମ ମର ସଂସାରରେ ଅମର ହୋଇ ରହନ୍ତା କାହିଁକି ? ଅତି କଷ୍ଟରେ ପଡ଼ି ଭକ୍ତ ଭଗବାନଙ୍କୁ ଯେଉଁ ଭାଷାରେ ସ୍ତବ କରେ, ତାହା ଅତି ପ୍ରାଣସ୍ପର୍ଶୀ । ଆଜି ଆମ୍ଭେମାନେ ମଧ୍ୟ ସେହି ବିଷ୍ଣୁ ସ୍ତବ ଶୁଣି ଜୀବନ ସାର୍ଥକ କରିବା ।



# ତ୍ରୟୋଦଶ ଅଧ୍ୟାୟ

## ପ୍ରହ୍ଲାଦଙ୍କର ବିଷ୍ଣୁ ସ୍ତବ

ମହା ସମୁଦ୍ର ମଧ୍ୟରେ ପର୍ବତମାନଙ୍କ ଦ୍ୱାରା ଆକ୍ରାନ୍ତ ବିଷ୍ଣୁଗତପ୍ରାଣ ଭକ୍ତପ୍ରବର ପ୍ରହ୍ଲାଦ ବିଷ୍ଣୁଙ୍କୁ ଡାକି କହିବାକୁ ଲାଗିଲେ, "ହେ ପୁଣ୍ଡରୀକାକ୍ଷ ! ହେ ପୁରୁଷୋତ୍ତମ ! ହେ ସର୍ବଲୋକାତ୍ମନ୍ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ତୀକ୍ଷ୍ଣ ଚକ୍ର ଧାରଣ କରିଥାଅ, ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ବ୍ରହ୍ମଣ୍ୟଦେବ, ଗୋ-ବ୍ରାହ୍ମଣଙ୍କ ହିତକର ଓ ଜଗତର ମଙ୍ଗଳକାରୀ ଗୋବିନ୍ଦ । ତୁମ୍ଭଙ୍କୁ ପୁନଃ ପୁନଃ ନମସ୍କାର । ତୁମ୍ଭେ ବ୍ରହ୍ମସ୍ୱରୂପରେ ସୃଷ୍ଟି କର, ବିଷ୍ଣୁରୂପେ ପାଳନ କର ଏବଂ କଳ୍ପାନ୍ତରେ ରୁଦ୍ରମୂର୍ତ୍ତି ଧରିଥାଅ । ତୁମ୍ଭେ ତ୍ରିମୂର୍ତ୍ତି, ତୁମ୍ଭଙ୍କୁ ନମସ୍କାର । ହେ ଅଚ୍ୟୁତ ! ଦେବତା, ଯକ୍ଷ, ଅସୁର, ସିଦ୍ଧ, ନାଗ, ଗନ୍ଧର୍ବ, କିନ୍ନର, ପିଶାଚ, ରାକ୍ଷସ, ମନୁଷ୍ୟ, ପଶୁ, ପକ୍ଷୀ, ପିପିଲିକା, ସରୀସୃପ, ଭୂମି, ଜଳ, ଆକାଶ, ବାୟୁ, ଶବ୍ଦ, ସ୍ପର୍ଶ, ରସ, ରୂପ, ଗନ୍ଧ, ମନ, ବୁଦ୍ଧି, ଆତ୍ମା, କାଳ ଓ ସତ୍ତ୍ୱାଦିଗୁଣ—ତୁମ୍ଭେ ଏ ସମୁଦାୟର କାରଣ ଏବଂ ଏହି ସମୁଦାୟ ପଦାର୍ଥ ତୁମ୍ଭର ସ୍ୱରୂପ । ତୁମ୍ଭେ ବିଦ୍ୟା, ତୁମ୍ଭେ ଅବିଦ୍ୟା, ତୁମ୍ଭେ ସତ୍ୟ, ତୁମ୍ଭେ ଅସତ୍ୟ, ତୁମ୍ଭେ ବିଷ, ତୁମ୍ଭେ ଅମୃତ, ତୁମ୍ଭେ ବର୍ତ୍ତମାନ ଓ ଅତୀତ ସମୁଦାୟ ବେଦୋକ୍ତ କର୍ମସ୍ୱରୂପ । ହେ ବିଷ୍ଣୋ ! ତୁମ୍ଭେ ସମସ୍ତ କର୍ମର ଫଳଭୋକ୍ତା ଓ ସମସ୍ତ କର୍ମର ଉପକରଣ ଏବଂ ତୁମ୍ଭେ ସମସ୍ତ କର୍ମର ଫଳ । ପ୍ରଭୋ ! ତୁମ୍ଭେ ମୋତେ, ଅନ୍ୟସମସ୍ତଙ୍କୁ ଏବଂ ଏହି ସମଗ୍ର ବିଶ୍ୱକୁ ବ୍ୟାପି ରହିଅଛ । ତୁମ୍ଭର ଏହି ବ୍ୟାପ୍ତିଦ୍ୱାରା ସୂଚିତ ହେଉଅଛି ଯେ, ତୁମ୍ଭର ସାମର୍ଥ୍ୟ ପ୍ରଭୂତ ଏବଂ ତୁମ୍ଭର ସକଳାଦି

ସତ୍ୟ । ଯୋଗୀମାନେ ତୁମ୍ଭର ଚିନ୍ତା କରନ୍ତି, ଯାଜ୍ଞିକମାନେ ତୁମ୍ଭର ଉଦ୍ଦେଶ୍ୟରେ ଯଜ୍ଞାନୁଷ୍ଠାନ କରିଥାନ୍ତି । ଏହି ପ୍ରକାଣ୍ଡ ବ୍ରହ୍ମାଣ୍ଡ ତୁମ୍ଭର ମହତ୍ ରୂପ । ଏହି ଜଗତ୍ ତଦପେକ୍ଷା ସୂକ୍ଷ୍ମ; ନାନାପ୍ରକାର ଜୀବଜନ୍ତୁ ତଦପେକ୍ଷା ସୂକ୍ଷ୍ମ ଏବଂ ଜୀବଜନ୍ତୁମାନଙ୍କର ଯେ ଅନ୍ତରାତ୍ମା ଅଛି, ତାହା ତତ୍‌ସର୍ବାପେକ୍ଷା ସୂକ୍ଷ୍ମ । ଏ ସମସ୍ତ ତୁମ୍ଭର ରୂପଭେଦ । ଏହି ଅନ୍ତରାତ୍ମାଠାରୁ ଉତ୍କୃଷ୍ଟ ସୂକ୍ଷ୍ମାଦି ବିଶେଷଣରହିତ ବହିର୍ଭୂତ ତୁମ୍ଭର ପରମାତ୍ମା-ସ୍ୱରୂପ କୌଣସି ଏକ ଅଚିନ୍ତ୍ୟ ରୂପ ଅଛି । ତୁମ୍ଭର ସେହି ପୁରୁଷୋତ୍ତମନାମକ ରୂପକୁ ନମସ୍କାର ।

"ହେ ସର୍ବାତ୍ମନ୍, ସର୍ବ ଭୂତ ମଧ୍ୟରେ ତୁମ୍ଭର ତ୍ରିଗୁଣାଶ୍ରିତ ଅନ୍ୟ ଏକ ଜଡ଼ ଶକ୍ତି ଅଛି । ହେ ସୁରେଶ୍ୱର । ସେହି ନିତ୍ୟ ଶକ୍ତିକୁ ନମସ୍କାର । ଯାହା ବାକ୍ୟ ମନର ଅଗୋଚର, ଯାହା ଜାତିଗୁଣାଦି ବିଶେଷଣଶୂନ୍ୟ ତୁମ୍ଭର ସେହି ପରମ ଚିତ୍‌ଶକ୍ତିକୁ ନମସ୍କାର । କୌଣସି ପଦାର୍ଥ ଯାହାଙ୍କଠାରୁ ସ୍ୱତନ୍ତ୍ର ନୁହେ, କିନ୍ତୁ ସେ ସକଳ ପଦାର୍ଥଠାରୁ ସ୍ୱତନ୍ତ୍ର, ସେହି ଭଗବାନ୍ ବାସୁଦେବଙ୍କୁ ସର୍ବଦା ନମସ୍କାର । ଯାହାଙ୍କର ନାମ ଓ ରୂପ ନାହିଁ—କେବଳ ଅସ୍ତିତ୍ୱଦ୍ୱାରା ଯାହାଙ୍କର ଉପଲବ୍ଧି ହୋଇଥାଏ, ସେହି ମହାତ୍ମାଙ୍କୁ ଭୂୟୋଭୂୟଃ ନମସ୍କାର କରେଁ । ଦେବତାମାନେ ଯାହାଙ୍କର ସୂକ୍ଷ୍ମ ରୂପକୁ ନେତ୍ରଗୋଚର କରି ନ ପାରି ଅବତାରରୂପକୁ ଅର୍ଚ୍ଚନା କରନ୍ତି, ସେହି ମହାତ୍ମାଙ୍କୁ ନମସ୍କାର । ଯେ ସମସ୍ତଙ୍କ ଅନ୍ତରରେ ଅବସ୍ଥାନ କରି ଶୁଭାଶୁଭ ସମୁଦାୟ ପର୍ଯ୍ୟବେକ୍ଷଣ କରୁଅଛନ୍ତି, ସେହି ସର୍ବସାକ୍ଷୀ ବିଷ୍ଣୁଙ୍କୁ ନମସ୍କାର । ଏହି ଜଗତ୍ ଯାହାଙ୍କଠାରୁ ଅଭିନ୍ନ, ସେହି ବିଷ୍ଣୁଙ୍କୁ ନମସ୍କାର । ସେ ସମସ୍ତଙ୍କର ଧ୍ୟେୟ ଓ ଜଗତର ଆଦି । ସେ ଅବ୍ୟୟ ପୁରୁଷ । ସେ ମୋ ପ୍ରତି ପ୍ରସନ୍ନ ହେଉନ୍ତୁ । ଯାହାଙ୍କଠାରେ ଅକ୍ଷୟ ଅବ୍ୟୟ ଏହି ବିଶ୍ୱ ଓତପ୍ରୋତ ହୋଇ ରହିଅଛି, ଯେ ସମସ୍ତଙ୍କର ଆଧାର, ସେହି ହରି ମୋ ପ୍ରତି ପ୍ରସନ୍ନ ହେଉନ୍ତୁ । ଯାହାଙ୍କଠାରେ ସମୁଦାୟ ବ୍ରହ୍ମାଣ୍ଡ ଅବସ୍ଥିତ

ଯାହାଙ୍କଠାରୁ ସମଗ୍ର ବ୍ରହ୍ମାଣ୍ଡ ଉତ୍ପନ୍ନ, ଯେ ସମୁଦାୟ ବ୍ରହ୍ମାଣ୍ଡସ୍ୱରୂପ ସେହି ବିଷ୍ଣୁଙ୍କୁ ନମସ୍କାର । ତାହାଙ୍କୁ ବାରମ୍ବାର ନମସ୍କାର । ସେହି ଅନନ୍ତ ପୁରୁଷ ସର୍ବଗାମୀ, ସୁତରାଂ ସେ ଯେ, ମୁଁ ସେ ( ସୋଽହଂ ) । ମୋଠାରୁ ସମସ୍ତ ଉତ୍ପନ୍ନ ହୋଇଅଛି । ମୁଁ ସମୁଦାୟ—ମୋଠାରେ ସମୁଦାୟ ଅଛି ଏବଂ ମୁଁ ନିତ୍ୟ ଓ ଅକ୍ଷୟ । ପରମାତ୍ମାଙ୍କଠାରେ ମୋର ଆଶ୍ରୟ । ମୁଁ ଅକ୍ଷୟ; ଅବ୍ୟୟ ବ୍ରହ୍ମ—ମୁଁ ସୃଷ୍ଟି ଆଗରୁ ବିଦ୍ୟମାନ ଥିଲି ଏବଂ ମହାପ୍ରଳୟ ପରେ ମଧ୍ୟ ବିଦ୍ୟମାନ ଥିବି । ମୁଁ ପରମ ପୁରୁଷ ।”

ବାରିଧିର ଅଗାଧ ଜଳରେ ପର୍ବତାକ୍ରାନ୍ତ ହୋଇ ପ୍ରହ୍ଲାଦ ଏହିରୂପେ ଆତ୍ମା ସହିତ ଅଭେଦଭାବରେ ବିଷ୍ଣୁଙ୍କୁ ଚିନ୍ତା କରି ସମସ୍ତଙ୍କର ପ୍ରାର୍ଥନୀୟ ତନ୍ମୟତ୍ୱ ଲାଭ କଲେ ଏବଂ ସେ ଆପଣାକୁ ଅଚ୍ୟୁତ ବିଷ୍ଣୁ ବୋଲି ବୋଧ କରିବାକୁ ଲାଗିଲେ । ସେ ସମୟରେ ତାହାଙ୍କର ଏପରି ଭେଦଜ୍ଞାନ ରହିଲା ନାହିଁ ଯେ, ସେ ସ୍ୱୟଂ ପ୍ରହ୍ଲାଦ । ସେ ଅବାନ୍ତର ଜ୍ଞାନ ପରିଶୂନ୍ୟ ହୋଇ ମୁଁ ଅବ୍ୟୟ, ଅନନ୍ତ ପରମାତ୍ମ—ଏହି ଚିନ୍ତା କରିବାକୁ ଲାଗିଲେ । ପ୍ରହ୍ଲାଦଙ୍କର ଏହିପରି ଭାବନାଯୋଗେ ପାପକ୍ଷୟ ହୋଇଗଲା । ସେତେବେଳେ ବିଷ୍ଣୁ ତାହାଙ୍କର ସେହି ବିଶୁଦ୍ଧ ତତ୍ତ୍ୱଜ୍ଞାନମୟ ଅନ୍ତଃକରଣରେ ଅବସ୍ଥାନ କରିବାକୁ ଲାଗିଲେ । ଏହିରୂପେ ପ୍ରହ୍ଲାଦ ଯେତେବେଳେ ଯୋଗବଳରେ ବିଷ୍ଣୁମୟ ହେଲେ, ସେତେବେଳେ ତାହାଙ୍କର ଅଙ୍ଗଶୃଙ୍ଖଳାରେ ସହସା ନାଗପାଶ ଛିନ୍ନ ହୋଇଗଲା; ସମୁଦ୍ର କ୍ଷୁଭିତ ଓ ତରଙ୍ଗାକୁଳ ହୋଇ ଉଠିଲା । ଜଳଜନ୍ତୁମାନେ ତାହା ମଧ୍ୟରେ ପ୍ରବଳ ବେଗରେ ପରିଭ୍ରମଣ କରିବାକୁ ଲାଗିଲେ । ସେତେବେଳେ ମହାମତି ପ୍ରହ୍ଲାଦ ଦୈତ୍ୟମାନଙ୍କ ଦ୍ୱାରା କ୍ଷିପ୍ତ ବକ୍ଷୋପରିନିହିତ ଶୈଳଶ୍ରେଣି ଦୂରକୁ ନିକ୍ଷେପ କରି ସେହି ସାଗରସଳିଳରୁ ନିର୍ଗତ ହେଲେ । ସେ ସମୁଦ୍ରରୁ ବାହାରି ଦେଖିଲେ, ସମୁଦାୟ ଜଗତ୍ ଆକାଶାଦିରୂପେ ଦୃଶ୍ୟମାନ ହେଉଅଛି । ପରେ ସେ ଆପଣାକୁ ପୁନର୍ବାର ପ୍ରହ୍ଲାଦ ବୋଲି ସ୍ମରଣ କଲେ । ଅନନ୍ତର ଧୀମାନ୍

ଦୈତ୍ୟବାଳକ ଇନ୍ଦ୍ରିୟାଦି ସଂଯତ କରି ସ୍ଥିର ମନରେ ଏକାଗ୍ର ଭାବରେ ଅନାଦି ପୁରୁଷୋତ୍ତମଙ୍କର ସ୍ତବ କରିବାକୁ ଲାଗିଲେ ।

ପ୍ରହ୍ଲାଦ କହିଲେ, "ହେ ପରମାର୍ଥ ଜ୍ଞାନରୂପ ! ହେ ଦୃଶ୍ୟରୂପ ! ତୁମ୍ଭେ ସ୍ଥୂଳ, ସୂକ୍ଷ୍ମ, କ୍ଷର ଓ ଅକ୍ଷର । ତୁମ୍ଭେ ବ୍ୟକ୍ତ, ଅବ୍ୟକ୍ତ, ନିରାକାର, ସାକାର, ନିୟାମକ ଓ ନିର୍ଲେପ । ତୁମ୍ଭେ ସ୍ୱଶକ୍ତି ପ୍ରକାଶ ଦ୍ୱାରା ଗୁଣମାନଙ୍କୁ ଅନୁରଞ୍ଜିତ କରିଥାଅ; ତୁମ୍ଭେ ସକଳ ଗୁଣର ଆଧାର । ତୁମ୍ଭେ ନିର୍ଗୁଣ ଓ ସଗୁଣ । ତୁମ୍ଭେ ମୂର୍ତ୍ତି ଓ ଅମୂର୍ତ୍ତି । ତୁମ୍ଭେ ମହାମୂର୍ତ୍ତି ଓ ସୂକ୍ଷ୍ମମୂର୍ତ୍ତି । ତୁମ୍ଭେ ବ୍ୟକ୍ତ ଓ ଅବ୍ୟକ୍ତ । ତୁମ୍ଭେ ଭୀଷଣ ଓ ସୌମ୍ୟ ସ୍ୱରୂପ । ତୁମ୍ଭେ ବିଦ୍ୟା ଓ ଅବିଦ୍ୟା ସ୍ୱରୂପ । ତୁମ୍ଭେ ଅଚ୍ୟୁତ । ତୁମ୍ଭେ ସତ୍ ଓ ଅସତ୍‌ରୂପ । ତୁମ୍ଭେ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଉଭୟ ଉତ୍ପାଦନ କରୁଅଛ । ତୁମ୍ଭେ ନିତ୍ୟାନିତ୍ୟ ପ୍ରପଞ୍ଚସ୍ୱରୂପ; କିନ୍ତୁ ବସ୍ତୁତଃ ତୁମ୍ଭେ ନିଷ୍ପ୍ରପଞ୍ଚ । ଜ୍ଞାନୀମାନେ ତୁମ୍ଭଙ୍କୁ ଆଶ୍ରୟ କରିଥାନ୍ତି । ତୁମ୍ଭେ ଆଦିକାରଣ । ତୁମ୍ଭଙ୍କୁ ନମସ୍କାର । ଯେ ସ୍ଥୂଳ ଓ ସୂକ୍ଷ୍ମ, ଯେ ସମସ୍ତ ପ୍ରାଣୀସମକ୍ଷରେ ପ୍ରକାଶ ସ୍ୱରୂପରେ ବିଦ୍ୟମାନ, ଯେ ସମସ୍ତ ଭୂତ ଅଥଚ ତାହା ନୁହନ୍ତି, ଯାହାଙ୍କଠାରୁ ବିଶ୍ୱ ଉତ୍ପନ୍ନ ହୋଇଅଛି ଅଥଚ ଯେ ବିଶ୍ୱର କାରଣ ନୁହନ୍ତି, ସେହି ପୁରୁଷୋତ୍ତମଙ୍କୁ ନମସ୍କାର ।" ସଭାମଧ୍ୟରେ ପ୍ରହ୍ଲାଦଙ୍କର ଏହି ସ୍ତବ ଦୈତ୍ୟରାଜଙ୍କ ପକ୍ଷରେ ଅସହ୍ୟ-ହେଲା ।



# ଚତୁର୍ଦ୍ଦଶ ଅଧ୍ୟାୟ

---

## ହିରଣ୍ୟକଶିପୁ ବଧ

ହିରଣ୍ୟକଶିପୁ ପ୍ରହ୍ଲାଦଙ୍କ ମୁହଁରୁ ଏହିସବୁ କଥା ଶୁଣି ସକ୍ରୋଧସ୍ବରରେ ତାହାଙ୍କୁ କହିବାକୁ ଲାଗିଲେ, "ରେ ମୂର୍ଖ, ତୁ ଅତ୍ୟନ୍ତ ଆତ୍ମପ୍ରଶଂସା କରୁଅଛୁ; ନିଶ୍ଚୟ ତୋର ମରିବାର ସମୟ ହୋଇଅଛି; କାରଣ ମୁମୂର୍ଷୁ ଲୋକମାନେ ପ୍ରଳାପ କରିଥାନ୍ତି।" ପ୍ରହ୍ଲାଦ ଉତ୍ତର କଲେ, "ଭଗବାନ୍ ସର୍ବତ୍ର ବିରାଜିତ।" ହିରଣ୍ୟକଶିପୁ କହିଲେ, "ସେ ଯଦି ସର୍ବତ୍ର ଅଛନ୍ତି, ତେବେ ଏହି ସ୍ତମ୍ଭ ମଧ୍ୟରେ ନାହାନ୍ତି କାହିଁକି?" ପ୍ରହ୍ଲାଦ ସ୍ତମ୍ଭ ଆଡ଼କୁ ଚାହିଁ ଭଗବାନଙ୍କର ସ୍ତବ ଶେଷକରି କହିଲେ, "ଦେଖନ୍ତୁ, ଏହି ସ୍ତମ୍ଭ ମଧ୍ୟରେ ସେ ବିରାଜ କରୁଅଛନ୍ତି।" ଦୈତ୍ୟେଶ୍ବର ସ୍ତମ୍ଭମଧ୍ୟରେ କିଛି ଦେଖି ନ ପାରି ମହାକ୍ରୋଧରେ କହିଲେ, "ରେ ପାଷଣ୍ଡ, ତୁ ଏତେବେଳେ ପୁଣି ମୋ ନିକଟରେ ଛଳନା କରୁଅଛୁ? ମୁଁ ଏହିକ୍ଷଣି ତୋର ମସ୍ତକ ଛେଦନ କରିବି। ତୋର ହରି ଭଲ ତେବେ ରକ୍ଷା କରନ୍ତୁ।" ହିରଣ୍ୟକଶିପୁ କୋପାବିଷ୍ଟ ହୋଇ ପ୍ରହ୍ଲାଦଙ୍କୁ ନାନାପ୍ରକାର ଦୁର୍ବାକ୍ୟ-ଦ୍ୱାରା ଅନେକ ଗାଳିମନ୍ଦ କରିବାକୁ ଲାଗିଲେ। ପରେ ଖଡ୍ଗ ଧରି ସେହି ସ୍ତମ୍ଭରେ ମୁଷ୍ଟି ପ୍ରହାର କଲେ। ମୁଷ୍ଟି ପ୍ରହାର କରିବା ମାତ୍ରକେ ସେହି ସ୍ତମ୍ଭରୁ ଏପରି ଭୀଷଣ ଶବ୍ଦ ଉଠିଲା ଯେ ବୋଧ ହେଲା, ଯେପରି ବ୍ରହ୍ମାଣ୍ଡ ବିଦୀର୍ଣ୍ଣ ହୋଇଗଲା। ବ୍ରହ୍ମାଦି ଦେବମାନେ ନିଜ ନିଜ ଆବାସରେ ଥାଇ ସେହି ଭୟଙ୍କର ଶବ୍ଦ ଶୁଣି ପାରିଲେ। ସେମାନଙ୍କର ମନରେ ହେଲା ଯେପରି ସେମାନଙ୍କର ଘରଦ୍ୱାର ବିନଷ୍ଟ ହୋଇଗଲା। ଏହି ଶବ୍ଦ ଶୁଣି ହିରଣ୍ୟକଶିପୁଙ୍କର ତର୍ଜନ ଗର୍ଜନ ବନ୍ଦ ହୋଇଗଲା। ଅନ୍ୟାନ୍ୟ ଦୈତ୍ୟ

ପଢମାନେ ସେ ଶବ୍ଦ ଶୁଣି ଅତ୍ୟନ୍ତ ଭୀତ ହେଲେ । ହିରଣ୍ୟକଶିପୁ ସଭାର ଚତୁର୍ଦ୍ଦିଗେ ଅନାଇଲେ—କେଉଁଠାରୁ ଏହି ଶବ୍ଦ ଉଠିଲା—କିନ୍ତୁ ସ୍ଥିର କରି ପାରିଲେ ନାହିଁ । ଏଣେ ଭକ୍ତାଧୀନ ଭଗବାନ୍ ନିଜ ଭକ୍ତ ପ୍ରହ୍ଲାଦଙ୍କର କଥା ରକ୍ଷା କରିବା ଏବଂ ସର୍ବଭୂତରେ ଈଶ୍ୱର ଅଛନ୍ତି, ଏହା ପ୍ରମାଣ କରିବାପାଇଁ ଅସୁରଘାତକ ଭୟଙ୍କର ମୂର୍ତ୍ତି ଧରି ସେହି ସ୍ତମ୍ଭମଧ୍ୟରେ ପ୍ରକାଶିତ ହେଲେ । ତାହାଙ୍କର ଏହି ମୂର୍ତ୍ତି ପଶୁର ଆକାର ନୁହେ, ମନୁଷ୍ୟର ଆକାର ବି ନୁହେ—ତେଣୁ ଅତ୍ୟନ୍ତ ଭୟଙ୍କର ହୋଇଥିଲା ।

ଏହି ଭୀଷଣ ଶବ୍ଦ କିଏ କଲା ? ହିରଣ୍ୟକଶିପୁ ଚତୁର୍ଦ୍ଦିଗେ ତାହାର ଅନୁସନ୍ଧାନ କରୁଅଛନ୍ତି—ଏପରି ସମୟରେ ମନୁଷ୍ୟ ଓ ସିଂହଯୁକ୍ତ ଗୋଟିଏ ମୂର୍ତ୍ତି ସେହି ସ୍ତମ୍ଭ ମଧ୍ୟରୁ ବାହାରିବାର ଦେଖିଲେ । ସେହି ନୃସିଂହ ରୂପ ଦେଖି ଦୈତ୍ୟରାଜ କହିଲେ, "ଅହୋ ! କି ଚମତ୍କାର ! ଏ ସିଂହ ନୁହେ, ମନୁଷ୍ୟ ନୁହେ । ଏପରି ଅଦ୍ଭୁତ ମୂର୍ତ୍ତି ମୁଁ କେବେହେଁ ଦେଖି ନାହିଁ ।" ଦୈତ୍ୟରାଜ ଏହି ପ୍ରକାର ଚିନ୍ତା କରୁ କରୁ ନୃସିଂହ ମୂର୍ତ୍ତି ତାହାଙ୍କ ସମ୍ମୁଖରେ ଉଭା ହେଲେ । ତାହାଙ୍କର ଆଖି ଯୋଡ଼ିକ ତପ୍ତ କାଞ୍ଚନ ପରି ଶୋଭା ପାଉଥିଲେ ଏବଂ ତାହାଙ୍କର ଜଟାଜୁଟ ପ୍ରଜ୍ୱଳିତ ଅଗ୍ନି ପରି ଦୀପ୍ତ ହୋଇଥିଲା । ତାହାଙ୍କର ଜିହ୍ୱା ଖଡ୍ଗ ପରି ଚଞ୍ଚଳ ଏବଂ ନାକର ପୁଡ଼ା ପର୍ବତଗୁମ୍ଫା ପରି ବିସ୍ତୃତ ଓ ଗମ୍ଭୀର । ତାହାଙ୍କର ଗଳଦେଶ କ୍ଷୁଦ୍ର ଓ ସ୍ଥୁଳ, ବକ୍ଷସ୍ଥଳ ବିଶାଳ, କଟି ଅତ୍ୟନ୍ତ ସରୁ । ତାହାଙ୍କର ଶରୀର ଧଳା ଲୋମରେ ଆବୃତ ଓ ନଖଗୁଡ଼ିକ ଅସ୍ତ୍ରସ୍ୱରୂପ । ତାହାଙ୍କର ମସ୍ତକ ଗଗନମଣ୍ଡଳ ସ୍ପର୍ଶ କରିଥିଲା ଏବଂ ତାହାଙ୍କର ଆକୃତି ଦେଖୁ ଦେଖୁ ଅତ୍ୟନ୍ତ ଭୀଷଣ ହୋଇ ଉଠିଲା ।

ସେହି ଭୀଷଣ ମୂର୍ତ୍ତି ଦେଖି ହିରଣ୍ୟକଶିପୁ ମନେ ମନେ ଚିନ୍ତା କରିବାକୁ ଲାଗିଲା, "ମହାମାୟାବୀ ହରି ଏହି ରୂପରେ ମୋର ମୃତ୍ୟୁ ଚିନ୍ତା

କରି ରଖିଅଛନ୍ତି । ଯାହାହେଉ, ଏ ଉଦ୍ୟମରେ ମୋର କଣ ହେବ ?"
ଏହା କହି ଗଦା ହାତରେ ଧରି ସେ ସେହି ନୃସିଂହ ମୂର୍ତ୍ତିଙ୍କୁ ଆକ୍ରମଣ କଲା । ପତଙ୍ଗ ଯେପରି ନିଆଁରେ ପଡ଼ିଲେ ଦେଖାଯାଏ ନାହିଁ, ସେହିପରି ହିରଣ୍ୟକଶିପୁ ନୃସିଂହଙ୍କ ତେଜରେ ପଡ଼ି ଆଉ ଦେଖାଗଲା ନାହିଁ । ଦୈତ୍ୟରାଜ ମହାକ୍ରୋଧରେ ତାହାଙ୍କୁ ଗଦାଦ୍ୱାରା ପ୍ରହାର କଲା । ପରେ ଗରୁଡ଼ ପ୍ରକାଣ୍ଡ ସାପକୁ ଧରିବା ପରି ନୃସିଂହରୂପୀ ଭଗବାନ୍ ହରି ହିରଣ୍ୟକଶିପୁକୁ ଧରି ପକାଇଲେ । ତାହା ଦେଖି ଇନ୍ଦ୍ରାଦି ଦେବତାମାନେ ମେଘ ଉହାଡ଼ରେ ଭୟରେ କମ୍ପିବାକୁ ଲାଗିଲେ । ସେତେବେଳେ ଭଗବାନ ଘୋରତର ଅଟ୍ଟହାସ୍ୟ କରି ପୁନର୍ବାର ତାହାକୁ ଧରିଲେ । ସେ ଭଗବାନଙ୍କ ହସ୍ତରୁ ପଳାଇବା ପାଇଁ ଅନେକ ଚେଷ୍ଟା କରି ଅସମର୍ଥ ହେଲା । ଅନନ୍ତର ଭଗବାନ ହିରଣ୍ୟକଶିପୁକୁ ନିଜର ଜଙ୍ଘ ଉପରେ ରଖି ନଖଦ୍ୱାରା ଚିରି ପକାଇଲେ ।

ସେହି ନୃସିଂହଙ୍କର ଅଗ୍ନିଯୋଜକ ଅଦ୍ଭୁତ ଭୀଷଣରୂପ ଧାରଣ କଲା—କେହି ତାହାଙ୍କ ଆଡ଼କୁ ଚାହିଁ ପାରିଲେ ନାହିଁ । ସେ ମୁହଁ ମେଲା କରି ଓଠ ଚାଟିବାକୁ ଲାଗିଲେ । ହସ୍ତୀ ମାରିବା ପରେ ସିଂହର ଶରୀର ଯେପରି ରକ୍ତାକ୍ତ ହୁଏ, ହିରଣ୍ୟକଶିପୁର ରକ୍ତରେ ନୃସିଂହଙ୍କର ମୁଖ ଓ କେଶର ରକ୍ତବର୍ଣ୍ଣ ହୋଇ ଉଠିଲା । ଦୈତ୍ୟରାଜର ନାଡ଼ୀ ତାହାଙ୍କର ଗଳାଦେଶରେ ମାଳାପରି ଶୋଭା ପାଇବାକୁ ଲାଗିଲା । ସେ ହିରଣ୍ୟକଶିପୁର ହୃତ୍‌ପିଣ୍ଡ ଉପାଡ଼ି ଶତ ନଖଦ୍ୱାରା ତାହାର ସହସ୍ର ସହସ୍ର ଅନୁଚରମାନଙ୍କୁ ବିନାଶ କରିବାକୁ ଲାଗିଲେ । ସେତେବେଳେ ମେଘମାଳା ତାହାଙ୍କର ଜଟା ସ୍ପର୍ଶରେ କମ୍ପିତ ହେବାକୁ ଲାଗିଲା, ଗ୍ରହମାନେ ତାହାଙ୍କ ଦୃଷ୍ଟିପାତରେ ମଳିନ ପଡ଼ିଗଲେ, ତାହାଙ୍କର ନିଶ୍ୱାସରେ ସମୁଦ୍ର କ୍ଷୋଭିତ ହେଲା, ତାହାଙ୍କର ଭୟଙ୍କର ନିନାଦ ଶୁଣି ଦିଗ୍‌ଗଜମାନେ କାତରସ୍ୱରରେ ଧ୍ୱନି କରିବାକୁ ଲାଗିଲେ । ତାହାଙ୍କର ପଦାଘାତରେ ମେଦିନୀ କମ୍ପିତ

ହେଲା ଏବଂ ପ୍ରବଳ ବେଗରେ ପର୍ବତମାନ ଉପୁଡ଼ି ପଡ଼ିବା ପରି ହେଲା । ତାହାଙ୍କ ତେଜରେ ଦିକ୍ ଓ ଆକାଶମଣ୍ଡଳ ପ୍ରଜ୍ୱଳିତ ହୋଇ ପଡ଼ିଲା । ଭଗବାନ୍ ନୃସିଂହ ଦୁରାତ୍ମା ହିରଣ୍ୟକଶିପୁକୁ ଏହିରୂପେ ବିନାଶ କରି ସର୍ବୋତ୍କୃଷ୍ଟ ରାଜସିଂହାସନରେ ବସିଲେ । କିନ୍ତୁ ଭୟରେ କେହି ତାହାଙ୍କ ପାଖ ପଶିଲେ ନାହିଁ ।

ହିରଣ୍ୟକଶିପୁ ବିନଷ୍ଟ ହେବାରୁ ଦେବକନ୍ୟାମାନେ ଭଗବାନ୍ ନୃସିଂହଙ୍କ ଉପରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ଦେବତାମାନେ ବ୍ୟୋମଯାନରେ ଚଢ଼ି ଆକାଶପଥରେ ଅତି ମହାନନ୍ଦରେ ସେହି ନୃସିଂହ ମୂର୍ତ୍ତି ଦର୍ଶନ କରିବାକୁ ଲାଗିଲେ । ସେମାନଙ୍କର ବ୍ୟୋମଯାନଶ୍ରେଣୀରେ ଆକାଶମଣ୍ଡଳ ପରିପୂର୍ଣ୍ଣ ହେଲା । ଢାକଢୋଲ ଓ ତୁରିଭେରି ବାଜି ଉଠିଲା । ଗନ୍ଧର୍ବ ଓ ଅପ୍ସରାମାନେ ନୃତ୍ୟ ଗୀତ ଆରମ୍ଭ କଲେ । ଅନ୍ତରେ ବ୍ରହ୍ମା, ଇନ୍ଦ୍ର, ଶିବ ପ୍ରଭୃତି ଦେବତାମାନେ, ଋଷିମାନେ, ବିଷ୍ଣୁଙ୍କର ପାରିଷଦଗଣ ଓ ଅନ୍ୟାନ୍ୟଗଣ ସତ୍ୱରେ ଉପସ୍ଥିତ ହେଲେ । ସେମାନେ ହାତ ଯୋଡ଼ି ସିଂହାସନ ଉପରେ ବସିଥିବା ପୁରୁଷଶ୍ରେଷ୍ଠ ନୃସିଂହଙ୍କର ସ୍ତବ କରିବାକୁ ଲାଗିଲେ ।

ବ୍ରହ୍ମା କହିଲେ, "ଭଗବାନ ଅନନ୍ତଦେବଙ୍କୁ ମୁଁ ନମସ୍କାର କରୁଅଛି । ତାହାଙ୍କର ଶକ୍ତି ଅସୀମ, ବୀର୍ଯ୍ୟ ଅତି ଆଶ୍ଚର୍ଯ୍ୟଜନକ, କାର୍ଯ୍ୟ ଅତି ପବିତ୍ର । ସେ ନିଜର ଗୁଣଦ୍ୱାରା ସହଜରେ ଏହି ବିଶ୍ୱସୃଷ୍ଟିକୁ ପାଳନ ଓ ବିନାଶ କରୁଅଛନ୍ତି । ସେ ଅକ୍ଷୟ ଆତ୍ମାସ୍ୱରୂପ ।"

ଶିବ କହିଲେ, "ହେ ଭଗବନ୍, ସହସ୍ର ଯୁଗ ପରେ ଆପଣଙ୍କର କୋପ ପ୍ରକାଶ କରିବା ଯଥାର୍ଥ ସମ୍ଭବ । ବର୍ତ୍ତମାନ କୋପ ପରିତ୍ୟାଗ କରନ୍ତୁ । ଏହି କ୍ଷୁଦ୍ର ଦୈତ୍ୟ ବିନଷ୍ଟ ହୋଇଅଛି, ଏହି ଅସୁରାଧମ କଦାପି

ଆପଣଙ୍କର କ୍ରୋଧର କାରଣ ହୋଇ ନ ପାରେ । ହେ ଭକ୍ତବତ୍ସଳ, କ୍ରୋଧ ସମ୍ବରଣ କରି ଅତ୍ୟନ୍ତ ଭୀତ ପ୍ରହ୍ଲାଦଙ୍କୁ ରକ୍ଷା କରନ୍ତୁ ।”

ଏହିରୂପେ ଇନ୍ଦ୍ର, ଋଷିମାନେ, ପିତୃଗଣ, ସିଦ୍ଧଗଣ, ବିଦ୍ୟାଧରଗଣ ପ୍ରଜାପତିଗଣ, ବୈତାଳିକଗଣ, ବିଷ୍ଣୁଙ୍କର ପାରିଷଦଗଣ ଇତ୍ୟାଦି ନିଜ ନିଜ ସ୍ତବରେ ନୃସିଂହରୂପଧାରୀ ଭଗବାନ୍ ହରିଙ୍କୁ ପ୍ରସନ୍ନ କରିବା ପାଇଁ ସ୍ତବ କରିବାକୁ ଲାଗିଲେ ।



## ପଞ୍ଚଦଶ ଅଧ୍ୟାୟ

## ନୃସିଂହଙ୍କୁ ପ୍ରସନ୍ନ କରିବା ପରେ ବରପ୍ରାର୍ଥନା ଓ ବରଲାଭ

### ପ୍ରହ୍ଲାଦଙ୍କ ସ୍ତୁତି

ବ୍ରହ୍ମା ଓ ଶିବ ପ୍ରଭୃତି ଦେବତାମାନେ ନୃସିଂହଙ୍କର ସ୍ତବ କଲେ; କିନ୍ତୁ ତାହାଙ୍କୁ ଅତ୍ୟନ୍ତ ରାଗାନ୍ୱିତ ଦେଖି କେହି ତାହାଙ୍କ ନିକଟକୁ ଗଲେ ନାହିଁ । ଭଗବାନଙ୍କର କୋପଶାନ୍ତିର ଅନ୍ୟ ଉପାୟ ନ ଦେଖି ଦେବତାମାନେ ପରାମର୍ଶ କରି ଲକ୍ଷ୍ମୀଙ୍କୁ ତାହାଙ୍କ ପାଖକୁ ଯିବାପାଇଁ ଆଦେଶ କଲେ । କିନ୍ତୁ ଲକ୍ଷ୍ମୀ ସେହି ଭୀଷଣ ନୃସିଂହରୂପ ଦେଖି ଭୟରେ ଭଗବାନଙ୍କ ନିକଟକୁ ଯାଇ ପାରିଲେ ନାହିଁ । ତେଣୁ ବ୍ରହ୍ମା ପ୍ରହ୍ଲାଦଙ୍କୁ ଡାକି କହିଲେ, "ବାବୁ, ତୁମ୍ଭର ପିତାଙ୍କର ଅପରାଧରେ ଭଗବାନ୍ ଅତ୍ୟନ୍ତ ରୁଷ୍ଟ ହୋଇଅଛନ୍ତି—ତୁମ୍ଭେ ତାହାଙ୍କ ନିକଟକୁ ଯାଇ ତାହାଙ୍କର କ୍ରୋଧ ଶାନ୍ତ କର ।" ପ୍ରହ୍ଲାଦ ସେଥିରେ ସମ୍ମତ ହୋଇ କୃତାଞ୍ଜଳିପୂର୍ବକ ଭଗବାନଙ୍କ ନିକଟରେ ପହଞ୍ଚି ତାହାଙ୍କ ଶ୍ରୀଚରଣତଳେ ପଡିଗଲେ । ପ୍ରହ୍ଲାଦଙ୍କୁ ଭୂମିରେ ପଡ଼ିବାର ଦେଖି ଭକ୍ତବତ୍ସଳ ହରି କରୁଣାରସରେ ପରିପୂର୍ଣ୍ଣ ହେଲେ ଏବଂ ନିଜ ବାହୁଦ୍ୱାରା ତାହାଙ୍କୁ ଉଠାଇ ନିଜର ଶ୍ରୀହସ୍ତ ତାହାଙ୍କ ମୁଣ୍ଡ ଉପରେ ଥୋଇ ଅଭୟ ପ୍ରଦାନ କଲେ । ଯେ ଶ୍ରୀହସ୍ତ ଶମନର ଭୟ ଦୂର କରେ, ସେ ଶ୍ରୀହସ୍ତର ସ୍ପର୍ଶ ପାଇବାମାତ୍ରକେ ପ୍ରହ୍ଲାଦଙ୍କର ସମସ୍ତ ଅଶୁଭ ଦୂର ହେଲା । ତତ୍‌କ୍ଷଣାତ୍ ତାହାଙ୍କର ବ୍ରହ୍ମଜ୍ଞାନ ଉଦିତ ହେଲା, ରୋମ ଟାଙ୍କୁରି ଉଠିଲା ଏବଂ ଚକ୍ଷୁ ଯୋଡ଼ିକ ଅଶ୍ରୁଜଳରେ ପରିପୂର୍ଣ୍ଣ ଓ ହୃଦୟ ପ୍ରେମାର୍ଦ୍ର ହୋଇ ଉଠିଲା । ସେ ପ୍ରେମପୂର୍ଣ୍ଣ କଣ୍ଠରେ ବାରମ୍ବାର, "ବିଷ୍ଣୁଙ୍କୁ ନମସ୍କାର, ବିଷ୍ଣୁଙ୍କୁ ନମସ୍କାର" କହିବାକୁ ଲାଗିଲେ । ଯାହାଙ୍କ ପାଇଁ

ପ୍ରହ୍ଲାଦ ଏତେ ଲାଞ୍ଛନା, ଯନ୍ତ୍ରଣା ଓ ସାକ୍ଷାତ୍ ମୃତ୍ୟୁର ସମ୍ମୁଖୀନ ହୋଇଅଛନ୍ତି, ଯେ ପ୍ରହ୍ଲାଦଙ୍କୁ ଏତେବେଳଯାଏ ଅନଳ, ଅନଳ, ସର୍ପ, ବିଷ, ଅସ୍ତ୍ରଶସ୍ତ୍ର ପ୍ରଭୃତିର କରାଳ କବଳରୁ ରକ୍ଷା କରି ହରିଭକ୍ତିର ମହାତ୍ମ୍ୟ ଅକ୍ଷୁର୍ଣ୍ଣ ରଖିଅଛନ୍ତି, ଆଜି ସାକ୍ଷାତ୍ ତାହାଙ୍କୁ ସମ୍ମୁଖରେ ପାଇ ପ୍ରହ୍ଲାଦ ଯେ କେଉଁ ଭାବରେ ଅଭିବାଦନ କରିବେ, ତାହା ସ୍ଥିର କରିପାରିଲେ ନାହିଁ । ସେଥିପାଇଁ 'ନମସ୍କାର, ନମସ୍କାର' ଏହି ଅଭିବାଦନବାଣୀ ବାରମ୍ବାର ଉଚ୍ଚାରଣ କରିବାକୁ ଲାଗିଲେ । ଆଜି ବିଷ୍ଣୁଙ୍କର ପ୍ରସନ୍ନମୁଖ-ମୂର୍ତ୍ତି ଦେଖି ପ୍ରହ୍ଲାଦଙ୍କର ହୃଦୟସମୁଦ୍ର ଉଛୁଳି ପଡ଼ିଲା । ଆନନ୍ଦାଶ୍ରୁ ତାହାଙ୍କର ଚକ୍ଷୁ ଦୁଇଟିକୁ ପୂର୍ଣ୍ଣ କରି ବିଷ୍ଣୁଙ୍କୁ ଅଭିବାଦନ କରିବାଲାଗି ଦୁଇଟି ପୂର୍ଣ୍ଣ ଘଟର କାର୍ଯ୍ୟ କରିବାକୁ ଲାଗିଲା । କିନ୍ତୁ ସେହି ଆନନ୍ଦାଶ୍ରୁଜଡ଼ିତ ଚକ୍ଷୁରେ ସେ ବିଷ୍ଣୁଙ୍କୁ ଆଉ ଦେଖି ପାରିଲେ ନାହିଁ । ଅପଣାର ଭାବବିହ୍ୱଳତାକୁ କଥଞ୍ଚିତ୍ ସଂଯତ କରି ବିଷ୍ଣୁଙ୍କୁ କହିଲେ, "ହେ ଶରଣାଗତକ୍ଳେଶନାଶ ! ଆପଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ପୁନର୍ବାର ଦର୍ଶନ ଦେଇ ମୋତେ ପବିତ୍ର କରନ୍ତୁ ।"

ଶ୍ରୀହରି ଭକ୍ତପ୍ରବର ପ୍ରହ୍ଲାଦଙ୍କ ପ୍ରତି ପ୍ରସନ୍ନ ହୋଇ କହିଲେ, "ପ୍ରହ୍ଲାଦ ! ତୁମ୍ଭେ ମୋ ପ୍ରତି ସ୍ଥିରତର ଭକ୍ତି ପ୍ରଦର୍ଶନ କରିଥାଅ । ଏଥିପାଇଁ ମୁଁ ତୁମ୍ଭ ପ୍ରତି ଯଥୋପଯୁକ୍ତରୂପେ ପ୍ରସନ୍ନ ହୋଇଅଛି । ବର୍ତ୍ତମାନ ତୁମ୍ଭେ ତୁମ୍ଭର ଇଚ୍ଛାନୁରୂପେ ବର ପ୍ରାର୍ଥନା କର ।"

ପ୍ରହ୍ଲାଦ ଏହା ଶୁଣି ସ୍ୱର୍ଗକାମନା କଲେ ନାହିଁ ବା ଅତୁଳ ଐଶ୍ୱର୍ଯ୍ୟର କାମନା କଲେ ନାହିଁ । ପ୍ରକୃତ ଭକ୍ତ ଯେଉଁ ବସ୍ତୁ ପ୍ରାର୍ଥନା କରେ, ସେ ଶ୍ରୀହରିଙ୍କ ନିକଟରେ ସେହି-ବସ୍ତୁ ପ୍ରାର୍ଥନା କଲେ । ସେ କହିଲେ, "ଭଗବନ୍ ! ମୁଁ ଯେ ସମସ୍ତ ଯୋନିରେ ପରିଭ୍ରମଣ କରିବି, ସେହି ସେହି ଯୋନିରେ ଯେପରି ଆପଣଙ୍କ ପ୍ରତି ମୋର ସର୍ବଦା ଗାଢ଼ତର

ଭକ୍ତି ଥାଏ । ମୋହାଛନ୍ନ ବ୍ୟକ୍ତିମାନଙ୍କର ମାଳା, ଚନ୍ଦନ, କାମିନୀଙ୍କ ବିଷୟରେ ଯେପରି ଅବିଚଳିତ ପ୍ରୀତି ଥାଏ, ମୋର ହୃଦୟ ଯେପରି ଆପଣଙ୍କ ପ୍ରତି ସେହିପରି ଦୃଢ଼ ଓ ସ୍ଥିରତରରୂପେ ପ୍ରୀତିପୂର୍ଣ୍ଣ ହେଉ ।"

ଭଗବାନ୍ ପ୍ରହ୍ଲାଦଙ୍କର ଏହିପରି ପ୍ରାର୍ଥନା ଶୁଣି ଏହାକୁ ଗୋଟିଏ ପ୍ରାର୍ଥନା ବୋଲି ମନେ କଲେ ନାହିଁ । କାରଣ, ଯେ ଥରେ ଶ୍ରୀହରିଙ୍କୁ ଆପଣାର ବୋଲି ମନେ କରିଅଛି, ସେ ନିଶ୍ଚିନ୍ତ ଥାଇ ପାରେ ଯେ, ଜନ୍ମେ ଜନ୍ମେ ଶ୍ରୀହରି ତାହାର । ସେ ଶ୍ରୀହରିଙ୍କୁ ଛାଡ଼ିବାକୁ ଇଚ୍ଛୁକ ହେଲେ ମଧ୍ୟ ଦୟାମୟ ହରି ତାହାକୁ ଆଉ କଦାପି ଛାଡ଼ି ପାରନ୍ତି ନାହିଁ । ତଥାପି ପ୍ରହ୍ଲାଦଙ୍କର ପ୍ରାର୍ଥନା ଶୁଣି ଶ୍ରୀହରି କହିଲେ, "ପ୍ରହ୍ଲାଦ ! ମୋ ପ୍ରତି ତୁମର ତ ଅଚଳା ଭକ୍ତି ଅଛି ଏବଂ ତାହା ଚିରକାଳ ରହିବ ସନ୍ଦେହ ନାହିଁ । କିନ୍ତୁ ତୁମେ ବର୍ତ୍ତମାନ ତୁମର ଅଭିଳାଷାନୁଯାୟୀ ଅନ୍ୟ କୌଣସି ବର ପ୍ରାର୍ଥନା କର ।"

ଭଗବାନ୍ ହରିଙ୍କର ପ୍ରୀତିପୂର୍ଣ୍ଣ ବାକ୍ୟ ଶୁଣି ପ୍ରହ୍ଲାଦ ଏହିଥର ପରଙ୍କର ସକାଶେ ପ୍ରାର୍ଥନା କରିବେ ବୋଲି ସ୍ଥିର କଲେ । ପ୍ରହ୍ଲାଦ ସମସ୍ତ ବିପଦରୁ ଏତେବେଳଯାଏ ରକ୍ଷା ପାଇଅଛନ୍ତି; ସେଥିରେ ସେ ନିଶ୍ଚିନ୍ତ ରହିଛନ୍ତି । ଯେଉଁମାନେ ତାହାଙ୍କୁ—ବିଷ୍ଣୁଭକ୍ତଙ୍କୁ—ବିପଦରେ ପକାଇ ଏବଂ ବିଷ୍ଣୁଙ୍କ ପ୍ରତି ବିଦ୍ରୋହାଚରଣ କରି ପାପର ଭାଗୀ ହୋଇଅଛନ୍ତି, ସେମାନଙ୍କର ଦୁର୍ଦ୍ଦଶା ଭାବି, ସେମାନଙ୍କର ଅନ୍ଧକାରମୟ ଭବିଷ୍ୟତ୍ କଳ୍ପନା କରି ପ୍ରହ୍ଲାଦ ସର୍ବଦା ଚିନ୍ତିତ । ଭକ୍ତର ହୃଦୟ ମାୟାମୋହଶୂନ୍ୟ । ତାହାର ପୁଣି ଶତ୍ରୁ ମିତ୍ର କିଏ ? ଯେଉଁମାନେ ମାୟା ମୋହର ଅଧୀନ, ସେମାନେ 'ଏ ମୋର ଆପଣାର' ଏହା ଭାବି ଜଣକ ସହିତ ବନ୍ଧୁତା କରନ୍ତି ଏବଂ 'ସେ ମୋର ପର' ଏହା ଭାବି ଅନ୍ୟ ଜଣକ ପ୍ରତି ବୈରଭାବ ଆଚରଣ କରନ୍ତି । କିନ୍ତୁ ପ୍ରହ୍ଲାଦଙ୍କ

ତୁଲ୍ୟ ଭକ୍ତ ବିଶ୍ୱକୁ ହରିମୟ ସନ୍ଦର୍ଶନ କରନ୍ତି । ସୁତରାଂ ଅପରର କଷ୍ଟକୁ ସେମାନେ ନିଜର କଷ୍ଟ ବୋଲି ମନେ କରନ୍ତି । ତାହାଙ୍କର ପିତା ଓ ପିତୃନିର୍ଯୁକ୍ତ ବନ୍ଧୁବ୍ୟକ୍ତ ତାହାଙ୍କ ପ୍ରାଣନାଶ ଚେଷ୍ଟାରେ ଅପରାଧୀ । ଅତ ସେହି ଅପରାଧୀମାନଙ୍କର ଅପରାଧକ୍ଷାଳନ ପାଇଁ ବର ପ୍ରାର୍ଥନା କରିବାକୁ ଯାଇ ପ୍ରହ୍ଲାଦ ଶ୍ରୀହରିଙ୍କୁ କହିଲେ, "ପ୍ରଭୋ ! ମୁଁ ଆପଣଙ୍କର ସ୍ତବ କରିବାକୁ ଉଦ୍ୟତ ହେବାରୁ ମୋର ପିତା ମୋ ପ୍ରତି ବିଦ୍ୱେଷଭାବ ପ୍ରଦର୍ଶନ କରି ଯେ ପାପପଙ୍କରେ ମଗ୍ନ ହୋଇଅଛନ୍ତି, ତାହା ଆପଣଙ୍କ ପ୍ରସାଦରୁ କ୍ଷାଳିତ ହେଉ । ପ୍ରଭୋ ! ମୋର ପିତା ମୋର ଶରୀରରେ ଯେ ଅସ୍ତ୍ରଚାଳନା କରିଥିଲେ, ସେ ଯେ ମୋତେ ଅଗ୍ନିକୁଣ୍ଡରେ ନିକ୍ଷେପ କରିଥିଲେ ଏବଂ ତାହାଙ୍କର ଆଦେଶାନୁସାରେ ମୋତେ ଯେ ସର୍ପମାନେ ଦଂଶନ କରିଥିଲେ, ସେ ଯେ ମୋର ଭକ୍ଷ୍ୟଦ୍ରବ୍ୟରେ ବିଷ ମିଶ୍ରିତ କରି ଦେଇଥିଲେ, ସେ ଯେ ମୋତେ ବନ୍ଧନପୂର୍ବକ ସମୁଦ୍ରରେ ନିକ୍ଷେପ କରିଥିଲେ ଏବଂ ସେହି ସାଗରଗର୍ଭରେ ପର୍ବତଦ୍ୱାରା ଆଚ୍ଛାଦନ କରିଥିଲେ, ସେ ମୋ ପ୍ରତି ଅନ୍ୟାନ୍ୟ ଯେଉଁ ସବୁ ଅସଦ୍‌ବ୍ୟବହାର କରିଅଛନ୍ତି, ଆପଣଙ୍କ ପ୍ରତି ଭକ୍ତିଯୁକ୍ତ ହେବାରୁ ସେ ଦ୍ୱେଷ କରି ଅନ୍ୟାନ୍ୟ ଯେ ସମସ୍ତ ମହାପାତକ ସଞ୍ଚୟ କରିଅଛନ୍ତି, ପ୍ରଭୋ ! ଆପଣଙ୍କ ପ୍ରସାଦରୁ ସେ ସମୁଦାୟ ପାପରୁ ସେ ସଦ୍ୟ ବିମୁକ୍ତ ହୋଇନ୍ତୁ ।" ଧନ୍ୟ ପ୍ରହ୍ଲାଦ ! ଧନ୍ୟ ତୁମ୍ଭର ପିତୃପ୍ରୀତି ! ଧନ୍ୟ ତୁମ୍ଭର ମନୁଷ୍ୟତ୍ୱ ! ୧୯୪୬ ବର୍ଷ ପୂର୍ବେ ଯିଶୁଖ୍ରୀଷ୍ଟ ଆପଣାର ହତ୍ୟାକାରୀମାନଙ୍କ ପାଇଁ ଭଗବାନଙ୍କ ନିକଟରେ କ୍ଷମା ଭିକ୍ଷା କରି କହିଥିଲେ, 'ପିତଃ ! ସେମାନଙ୍କୁ କ୍ଷମାକର । କାରଣ ସେମାନେ କଅଣ (କି ପାପ) କରୁଅଛନ୍ତି, ତାହା ସେମାନେ ଜାଣନ୍ତି ନାହିଁ ।" ଯିଶୁଖ୍ରୀଷ୍ଟଙ୍କର ଏତିକିମାତ୍ର କଥା ଶୁଣି ଆଜ କୋଟି କୋଟି ମାନବ ତାହାଙ୍କ ଚରଣତଳେ ଉପବିଷ୍ଟ ଏବଂ ତାହାଙ୍କୁ ଆପଣାର ଉଦ୍ଧାରକର୍ତ୍ତା ବୋଲି ମନେ କରୁଅଛନ୍ତି । ପ୍ରହ୍ଲାଦ କିନ୍ତୁ କେବେ ଜନ୍ମଗ୍ରହଣ

କରିଥିଲେ, ହାଡ଼ିଦାସ ସେ ବିଷୟରେ ଜାଣିବି; ମାତ୍ର ମାନବସମାଜ ତାହାଙ୍କର ଏହି ଅମାନୁଷିକ ସହିଷ୍ଣୁତା, କ୍ଷମାଗୁଣ ଏବଂ ଅଚଳା ହରିଭକ୍ତି ପାଇଁ ତାହାଙ୍କୁ ଆପଣାର ହୃଦୟାସନରେ ସ୍ଥାନ ଦେଇ ଆସୁଅଛି ଏବଂ ଯାବଚ୍ଚନ୍ଦ୍ର ଦିବାକର ଏହିପରି ପ୍ରହ୍ଲାଦଙ୍କର ଗୁଣଗାନ କରି ଭକ୍ତପ୍ରାଣ ଜନୁଷଂହିଉଥିବ।

ପିତାଙ୍କର ପାପକ୍ଷାଳନ ପ୍ରାର୍ଥନା ଶୁଣି ଶ୍ରୀହରି କହିଲେ, "ପ୍ରହ୍ଲାଦ! ତୁମ୍ଭେ ଯାହା ପ୍ରାର୍ଥନା କରୁଅଛ, ମୋ ପ୍ରସାଦରୁ ତତ୍ସମୁଦାୟ ସିଦ୍ଧ ହେବ। ଅସୁରନନ୍ଦନ! ମୁଁ ତୁମ୍ଭଙ୍କୁ ଅନ୍ୟ ବର ଦେବା ସକାଶେ ଅଭିଳାଷ କରେଁ। ତୁମ୍ଭେ ପ୍ରାର୍ଥନା କର।"

ପ୍ରହ୍ଲାଦ ବିଷ୍ଣୁଙ୍କ ପ୍ରତି ଅଚଳା ଭକ୍ତି ଏବଂ ପିତାଙ୍କର 'ପାପକ୍ଷାଳନ ରୂପ ବର ଲାଭ କରି ସନ୍ତୁଷ୍ଟ। ସୁତରାଂ ସେ ଶ୍ରୀହରିଙ୍କୁ କହିଲେ, "ଭଗବାନ୍! ଆପଣ ମୋତେ ଯେ ବର ପ୍ରଦାନ କଲେ, ତଦ୍ଦ୍ୱାରେ ମୁଁ କୃତକୃତ୍ୟ ହୋଇଅଛି। ଆପଣ ଯଦି ଅନ୍ୟ ବର ପ୍ରଦାନ କରିବାପାଇଁ ଅଭିଳାଷୀ ହୋଇଥାନ୍ତି, ତେବେ ଏହି ବର ଦିଅନ୍ତୁ, ଯେପରି ଆପଣଙ୍କ ପ୍ରତି ମୋର ଭକ୍ତି କଦାପି ବ୍ୟଭିଚାରିତ ନ ହୁଏ। ପ୍ରଭୋ! ଆପଣ ସମୁଦାୟ ଜଗତର ମୂଳ। ଆପଣଙ୍କ ପ୍ରତି ଯାହାର ଦୃଢ଼ ଭକ୍ତି ଥାଏ, ତାହାର ଧର୍ମ ଅର୍ଥ ଓ କାମରେ କି ପ୍ରୟୋଜନ? କାରଣ ମୁକ୍ତି ତାହାର ହସ୍ତଗତ ବିବେଚନା କରିବାକୁ ହେବ।" ଭଗବାନ୍ ଏହା ଶୁଣି ଅତି ବିଶେଷ କିଛି ନ କହି ଏତିକି ମାତ୍ର କହିଲେ, "ମୋ ପ୍ରତି ତୁମ୍ଭର ଅନ୍ତଃକରଣ ଦୃଢ଼ ନିଶ୍ଚଳ ଓ ଭକ୍ତିପୂର୍ଣ୍ଣ ହୋଇଅଛି। ସୁତରାଂ ମୋ ପ୍ରସାଦରୁ ତୁମ୍ଭେ ନିର୍ବାଣ ମୁକ୍ତିଲାଭ କରିବ।" ଏହା କହି ଶ୍ରୀହରି ପ୍ରହ୍ଲାଦଙ୍କ ସମୀପରୁ ଅନ୍ତର୍ହିତ ହେଲେ।

---

# ଷୋଡ଼ଶ ଅଧ୍ୟାୟ

---

## ଭକ୍ତର ଜୟ

ହିରଣ୍ୟକଶିପୁର ମୃତ୍ୟୁ ପରେ ପ୍ରହ୍ଲାଦ ଦୈତ୍ୟମାନଙ୍କର ଅଧୀଶ୍ୱର ହେଲେ । ପ୍ରହ୍ଲାଦ ରାଜ୍ୟରେ ପ୍ରତିଷ୍ଠିତ ହେବାରୁ ଭୋଗଦ୍ୱାରା ତାଙ୍କର ଜନ୍ମଜନ୍ମାନ୍ତରର ପାପ ପୁଣ୍ୟ କ୍ଷୟପ୍ରାପ୍ତ ହେଲା । ତାଙ୍କର ବହୁସଂଖ୍ୟକ ପୁତ୍ରପୌତ୍ର ହେଲେ । ଅତୁଳ ଐଶ୍ୱର୍ଯ୍ୟ ଭୋଗ କରିବା ପରେ ଯେତେବେଳେ ତାଙ୍କର ପାପ ଓ ପୁଣ୍ୟ କ୍ଷୟପ୍ରାପ୍ତ ହେଲା, ସେତେବେଳେ ସେ ଭଗବାନ୍ ବିଷ୍ଣୁଙ୍କର ଧ୍ୟାନ କରି ନିର୍ବାଣ ମୁକ୍ତି ଲାଭ କଲେ ।

ଅବଶ୍ୟ ଦୈତ୍ୟରାଜ ହିରଣ୍ୟକଶିପୁର ଅତ୍ୟାଚାରରୁ ଦେବତାମାନଙ୍କୁ ରକ୍ଷା କରିବାପାଇଁ ପ୍ରହ୍ଲାଦଙ୍କର ଜନ୍ମ । ଭଗବାନ୍ ନିଜେ ଦେବତାମାନଙ୍କୁ କହିଥିଲେ ଯେ, ହିରଣ୍ୟକଶିପୁ ଯେତେବେଳେ ତାହାର ପୁତ୍ର ଭକ୍ତ ପ୍ରହ୍ଲାଦଙ୍କ ପ୍ରତି ଅତ୍ୟାଚାର କରିବ, ସେତେବେଳେ ସେ ନିଶ୍ଚୟ ବିନଷ୍ଟ ହେବ । ବାସ୍ତବିକ ପ୍ରହ୍ଲାଦଙ୍କ ପ୍ରତି ଅତ୍ୟାଚାର—ଏପରି ନୃଶଂସ ଅତ୍ୟାଚାର—କେହି କେବେ ଦେଖି ନାହାନ୍ତି ବା ଶୁଣି ନାହାନ୍ତି । ହିରଣ୍ୟକଶିପୁ ପ୍ରହ୍ଲାଦଙ୍କଠାରୁ ଯୋଗ ଓ ତପସ୍ୟାବଳରେ ବର ଲାଭକରି ଦଶଦିଗକୁ ଜୟ କରିଥିଲେ ସତ୍ୟ, କିନ୍ତୁ ନିଜର ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିଲେ । ଏଥିପାଇଁ ତାହାଙ୍କର ଦୁର୍ଗତିର ଶେଷ ନାହିଁ । ଏକେ ତ ପିତା ହୋଇ ପୁତ୍ରର ଲାଞ୍ଛନା ସ୍ୱଚକ୍ଷୁରେ ଦେଖିବା ସାମାନ୍ୟ ମାନସିକ ଯନ୍ତ୍ରଣାର କାରଣ ନୁହେଁ; ତାହା ଉପରେ ଭଗବାନଙ୍କର କୋପଦୃଷ୍ଟିରେ ପଡ଼ି ତାହାଙ୍କୁ ପ୍ରାଣ ପର୍ଯ୍ୟନ୍ତ ହରାଇବାକୁ ପଡ଼ିଲା ।

ପ୍ରହ୍ଲାଦ ପ୍ରଥମ ଜୀବନରେ ଯେଉଁ ଅତ୍ୟାଚାର ଓ କଷ୍ଟଯନ୍ତ୍ରଣା ସହିବାକୁ ପଡ଼ିଲା ଅନ୍ୟ କେହି ହୋଇଥିଲେ ସହି ପାରି ନ ଥାନ୍ତେ । କିନ୍ତୁ ପ୍ରହ୍ଲାଦ ନିଜକୁ ସଦା ଈଶ୍ୱରଙ୍କଠାରେ ଅର୍ପଣ କରିଥିବାରୁ କୌଣସି କଷ୍ଟକୁ କଷ୍ଟ ବୋଲି ମନେ କଲେ ନାହିଁ । ସେ ଏତେ କଷ୍ଟ ସହି ଶେଷରେ ଭଗବାନଙ୍କର କୃପା ଲାଭ କରି ପୃଥିବୀରେ ଲୋକଙ୍କୁ ଦେଖାଇ ଦେଲେ ଯେ, ଏପରି କଷ୍ଟ ନ କଲେ କୃଷ୍ଣ ଲାଭ ହୁଏ ନାହିଁ ।

ପ୍ରହ୍ଲାଦଙ୍କର ଆଉ ଗୋଟିଏ କଥା ଭାରି ସୁନ୍ଦର । ପ୍ରହ୍ଲାଦ ଏତେ ଅତ୍ୟାଚାର ସହ୍ୟ କଲାବେଳେ ଯେତେ ସାଧୁସ୍ୱଭାବର ଲୋକ, ସମସ୍ତେ ତାଙ୍କର ମିତ୍ର ପରି ତାଙ୍କର କଲ୍ୟାଣ କାମନା କରୁଥାନ୍ତି । ତେଣୁ ଭଗବାନଙ୍କ ସହିତ ଦେଖା ହେବାବେଳେ ମିତ୍ରମାନଙ୍କ ପାଇଁ ସେ ବିଶେଷ କିଛି ପ୍ରାର୍ଥନା କରି ନାହାନ୍ତି । କିନ୍ତୁ ଯେଉଁ ପିତାଙ୍କ ଆଦେଶରେ ନାନା ନିର୍ଯ୍ୟାତନ ଭୋଗ କଲେ, ଯେଉଁମାନେ ପିତାଙ୍କ ସପକ୍ଷ ହୋଇ ତାହାଙ୍କର ନିଷ୍ଠୁର ଆଦେଶକୁ କାର୍ଯ୍ୟରେ ପରିଣତ କଲେ—ଏ ସମସ୍ତେ ଆମ୍ଭମାନଙ୍କ ଦୃଷ୍ଟିରେ ପ୍ରହ୍ଲାଦଙ୍କର ଶତ୍ରୁ । ପ୍ରହ୍ଲାଦ ଶ୍ରୀହରିଙ୍କୁ ଦର୍ଶନ କରି ନିଜ ପାଇଁ ବା ନିଜର ବନ୍ଧୁବାନ୍ଧବମାନଙ୍କ ପାଇଁ ସେତେ ବ୍ୟସ୍ତ ହୋଇ ନାହାନ୍ତି; କିନ୍ତୁ ସେ ଶତ୍ରୁମାନଙ୍କର ଦୁର୍ଦ୍ଦଶାରେ କାତର ହୋଇ ଭଗବାନଙ୍କ ନିକଟରେ ସେମାନଙ୍କପାଇଁ କାତରଭାବରେ କ୍ଷମାପ୍ରାର୍ଥନା କରିଅଛନ୍ତି । ଏହି କାର୍ଯ୍ୟ କରିବାଦ୍ୱାରା ସେ ଶତ୍ରୁମାନଙ୍କୁ ଯେପରି ଭାବରେ ଜୟ କରିଅଛନ୍ତି, କୋଟି କୋଟି ସୈନ୍ୟସାମନ୍ତ ଓ ଅସ୍ତ୍ରଶସ୍ତ୍ର-ଦ୍ୱାରା ସେପରି ଜୟଲାଭ କରି ନ ଥାନ୍ତେ । ଏପରି ଜୟଲାଭ ଯାହା ତାହା ପକ୍ଷରେ ସମ୍ଭବ ନୁହେଁ । ଯେ ନିଜ ମଧ୍ୟରେ ଯେଉଁ ଭଗବାନଙ୍କୁ ଦର୍ଶନ କରୁଅଛି, ପର ମଧ୍ୟରେ ଯଦି ସେହି ଭଗବାନଙ୍କୁ ପ୍ରତ୍ୟକ୍ଷ କରି ପାରେ, ସେ ଧନ୍ୟ । କାରଣ ସେ ଏହି ପୃଥିବୀର ସକଳ ପ୍ରାଣୀଙ୍କୁ ଆପଣାର

ଜାଣି ତାହାର ପ୍ରତି ଶତ୍ରୁତା କରିପାରେ ନାହିଁ । ଯେଣୁ ତାହା ପ୍ରତି ଶତ୍ରୁତା କଲେ ସେ ଓଲଟି ତାହାରି ଶୁଭକାମନା କରି ତାହାକୁ ଜୟ କରେ ଏହିଭଳି ଜୟଲାଭ କେବଳ ପ୍ରହ୍ଲାଦଙ୍କ ପରି ପ୍ରକୃତ ଭକ୍ତ ଠାରେ ସମ୍ଭବ । ସେଥିପାଇଁ ବେଳେ ବେଳେ [illegible] ତାଳେ ସାଧୁମାନେ କହିଥାନ୍ତି:—

## "ଭକ୍ତର ଜୟ"



ଦ୍ରଷ୍ଟବ୍ୟ:—ଏହି ପୁସ୍ତକ ଶ୍ରୀମଦ୍ଭାଗବତ ଓ ବିଷ୍ଣୁପୁରାଣର ଅବଲମ୍ବନରେ ଲିଖିତ ।

ମୁଦ୍ରାକର—ଶ୍ରୀଲକ୍ଷ୍ମୀଧର ଗର୍ଗବଟୁ, ଶ୍ରୀରାଧାରମଣ ପ୍ରେସ, କଟକ
୧୯୪୨